# ଶିଶୁ ଶିଷା ବଧାନ ।

ଶ୍ରୀକରୁଣାକର ସାହୁ ।

ମୂଲ୍ୟ ୦ /୬

ଉତ୍କଳ ସାହିତ୍ୟାକାଶର ଉଜ୍ଜ୍ୱଳ ନକ୍ଷତ୍ର ; କବିବର୍ଯ୍ୟ, ରଘୁ ସଂହାର ଓ ରଘୁବଂଶ ପ୍ରଣେତା ; ସୁମାର୍ଜିତ—ସୁରୁଚି—ସଦ୍‌ଭାବ—ସମ୍ପଦ ପୂର୍ଣ୍ଣ ବିବିଧ କବିତା ରଚକ, ଗୁଣଗ୍ରାହୀ ଶ୍ରୀମାନ୍ ବଳଭଦ୍ର ଦେବ ବଡ଼କୁମାର

ମହୋଦୟଙ୍କର ମନ୍ତବ୍ୟ :—

ବିଦ୍ୟା ଚକୋର ଶ୍ରୀଯୁକ୍ତ କରୁଣାକର ସାହୁଙ୍କ ପ୍ରଣୀତ ଶିଶୁଶିକ୍ଷାବିଧାନ ନାମକ ପୁସ୍ତକ ଖଣ୍ଡ ମୁଁ ପାଠକରି ବଡ଼ ସନ୍ତୁଷ୍ଟ ହୋଇଅଛି ।

ବାଳକମାନେ ଭବିଷ୍ୟତ୍ର ମାନବସମାଜର ନେତା, ସେମାନଙ୍କର କ୍ଷୁଦ୍ର ମସ୍ତିଷ୍କରେ ଯେଉଁ ୨ ସତ୍‌ବୀଜର ସୂକ୍ଷ୍ମାଦପି ସୂକ୍ଷ୍ମଅଂଶ ଧୀରେ ୨ ସଞ୍ଚିତ ହେବ ପରସ୍ତରେ ସେହି ୨ ସୁନିବିଷ୍ଟପ୍ରତ୍ୟେକ ଉପଦେଶମାନ ବୃହଦାକାର ତରୁରୂପେ ପ୍ରକାଶିତ ହୋଇ ସୁଫଳଦ୍ୱାରା ସମାଜର ଓ ଦେଶର ସମ୍ପୂର୍ଣ୍ଣରୂପେ ମଙ୍ଗଳ ସାଧନକରିବ ।

ଯେଉଁ ପ୍ରଣାଳୀରେ ଏଦେଶରେ ଶିଶୁମାନଙ୍କୁ ଶିକ୍ଷା ଦିଆଯାଏ, ତହିଁରେ ସେମାନେ ସୁଶିକ୍ଷିତ ହେଲେ ମଧ୍ୟ ସେମାନଙ୍କର ଭବିଷ୍ୟତ୍ ଜୀବନର ଉଚ୍ଚଲକ୍ଷ୍ୟ ପୂରଣରେ ସମର୍ଥ ହୁଅନ୍ତି ନାହିଁ । ଅପ୍ରତ୍ୟକ୍ଷ ବିଧି ଯୁକ୍ତ ଶିକ୍ଷାରୁ ପ୍ରାଚୀନ ଅନୁକରଣ ଦ୍ୱାରା କୁସଂସ୍କାର ଗ୍ରସ୍ତହୋଇ ଶିଶୁମାନେ ପୂର୍ବ ସଂସ୍କାରାର୍ଜ୍ଜିତ ଅଭ୍ୟାସକୁ ତ୍ୟାଗକରି ପାରନ୍ତିନାହିଁ ଏଣୁ ସେହି ଉଚ୍ଚ ଲକ୍ଷ୍ୟରୁ ବିରତ ହୁଅନ୍ତି । କିନ୍ତୁ କିଣ୍ଡାରଗାର୍ଟେନ ପ୍ରଣାଳୀର ଶିକ୍ଷା ଦ୍ୱାରା ସେପରି ବିଶୃଙ୍ଖଳା ଘଟିବାର ସମ୍ଭବନାହେ । ଏଥିର ଶିକ୍ଷା ପରୋକ୍ଷନୁହେ, ପ୍ରତ୍ୟକ୍ଷ । ବାଲ୍ୟ କାଳରୁ ପ୍ରତ୍ୟକ୍ଷିଭୂତ ପଦାର୍ଥରତତ୍ତ୍ୱ

ସୁଶିକ୍ଷିତ ଶିକ୍ଷକ ମାନଙ୍କ ନିକଟରୁ ଶୁଣିଲେ ପ୍ରାଚୀନ ମନ୍ଦ ସଂସ୍କାର କାହାରିଦ୍ୱାରା ମଧ୍ୟ ଶିଶୁମସ୍ତିଷ୍କରେ ଚିରସ୍ଥାୟୀ ହୋଇ ପାରିବନାହିଁ ।

ଅତି ପ୍ରାଚୀନ କାଳରେ ଭାରତବର୍ଷରେ ଯେ ଏପରି ପଦ୍ଧତିର ଶିକ୍ଷା ଚଳିଆସୁ ନଥିଲା ଏହା ନୁହେଁ ସୁଇଜର୍ଲଣ୍ଡବାସୀ ପେଷ୍ଟାଲଟ୍‌ସି ଓ ଫ୍ରେଡରିକ ଫ୍ରୋବେଲ୍ ମହାତ୍ମାମାନେ କେତେକାଳ ଗଭୀର ଗବେଷଣା ଦ୍ୱାରା ମସ୍ତିଷ୍କ ଘଷି ଯାହା ପ୍ରକାଶକରି ଆଧୁନିକ ଶିକ୍ଷିତ ସମ୍ପ୍ରଦାୟକୁ ଚମତ୍କୃତ କରିଅଛନ୍ତି ସେହି ଶିକ୍ଷା ପ୍ରାପ୍ତ ହୋଇ ସହସ୍ରବର୍ଷ ପୂର୍ବେ ବୁଢ଼ା ବିଷ୍ଣୁଶର୍ମା କିପରି ସୁନ୍ଦର ଦୃଷ୍ଟାନ୍ତରେ ମନ ଆକର୍ଷଣ କରି ବାଳକମାନଙ୍କୁ ଶିକ୍ଷିତ କରୁଥିଲେ । ଏହା ହିତୋ-ପଦେଶ ପାଠକ ମାନଙ୍କୁ ଜଣାଅଛି ।

ସେହିପରି ଶିକ୍ଷା କାଳକ୍ରମେ ଏଦେଶରୁ ଲୁପ୍ତହୋଇ ଯାଇଥିଲା । ବର୍ତ୍ତମାନ ନବଶିକ୍ଷା ଆଲୋକପ୍ରାପ୍ତ ବୈଦେଶିକ ମାନଙ୍କର ପଦ୍ଧତି ଅବଲମ୍ବନ କରି ବିଦ୍ୟା-ନିକୋରଶ୍ରୀ ଯୁକ୍ତ ବାବୁ କରୁଣାକର ସାହୁ "ଶିଶୁଶିକ୍ଷା ବିଧାନ" ପ୍ରଣୟନକରି ଧନ୍ୟବାଦାର୍ହ ହୋଇଅଛନ୍ତି ।

ଏହିପୁସ୍ତକ ପ୍ରତ୍ୟେକେ ନିଜ ନିଜ ସନ୍ତାନ ମାନଙ୍କ ନିମନ୍ତେ ବ୍ୟବହାର କଲେ ସୁଫଳ ପାଇବେ ଏଥିରେ ସନ୍ଦେହ ନାହିଁ ।

ଲେଖକ ଯେପରି ପରିଶ୍ରମୀ ଆମ୍ଭେ ତାଙ୍କଠାରୁ ଭବି-ଷ୍ୟତରେ ସେ ଏପରି ସୁନ୍ଦର ସୁନ୍ଦର ପୁସ୍ତକ ରଚନା କରି ଦେଶର ଓ ସମାଜର ମଙ୍ଗଳ ସାଧନ କରିବେ ।

# ଉତ୍ସର୍ଗପତ୍ର

ବିବିଧ ସଦ୍‌ଗୁଣ ବିମଣ୍ଡିତ , [illegible]

ମାନନୀୟ ବାମଣ୍ଡା ଯୁବରାଜ ଶ୍ରୀମାନ୍ ଦିବ୍ୟ-

ଶଙ୍କର ଦେବ ମହୋଦୟଙ୍କ

ଶ୍ରୀକର କମଳେଷୁ ।

ସବିନୟ ନିବେଦନ ମିଦଂ,

ପରମ ଭକ୍ତିଭାଜନ ଶ୍ରୀମାନ୍ ଯୁବରାଜ ମହୋଦୟ ,

ଶ୍ରୀଯୁକ୍ତ ଭୋଗବିଳାସରେ ମଗ୍ନ ନରହି ସର୍ବଦା କଠୋର ପରିଶ୍ରମ ଦ୍ୱାରା ଯେପରି ବିଦ୍ୟା ପଥରେ ଅଗ୍ରସର ହେଉଅଛନ୍ତି , ତାହା ଅଧୂନା ଉତ୍କଳରେ ବିରଳ ବୋଇଲେ ଅତ୍ୟୁକ୍ତି ହେବନାହିଁ । ଶ୍ରୀଯୁକ୍ତ ଯେ କେବଳ ଆପଣା ଶିକ୍ଷାପ୍ରତି ଲକ୍ଷ୍ୟକରି ଅଗ୍ରସର ହେଉଅଛନ୍ତି ତାହାନୁହେ ସଙ୍ଗେ ସଙ୍ଗେ ବାମଣ୍ଡା ପ୍ରଜାବର୍ଗଙ୍କୁ ମଧ୍ୟ ସୁଶିକ୍ଷା ଅତକୁ ଅଗ୍ରସର ହେବାକୁ ସର୍ବଦା ଉତ୍ସାହିତ କରୁଅଛନ୍ତି ।

ଶ୍ରୀଗ୍ରମୁଙ୍କ ଶିକ୍ଷା ସମ୍ବନ୍ଧେ ବିଶେଷ ଯତ୍ନ ଥିବାର ଦେଖି ଏବ ସଦ୍ଗୁଣ ନିଳୟରେ ମୁଗ୍ଧ ହୋଇ ଏହି "ଶିଶୁ-ଶିକ୍ଷା ବିଧାନ" ପୁସ୍ତକ ଖଣ୍ଡିକ ଶ୍ରୀ ଗ୍ରମୁଙ୍କର ପବିତ୍ର କରକମଳରେ ଅର୍ପଣ କରିବାକୁ ସାହସୀ ହେଲି । ଗ୍ରହଣାନୁମତି ହେଲେ ନିଜର ଜୀବନକୁ ସଫଳ ଜ୍ଞାନ କରିବି ।

ଶ୍ରୀଗ୍ରମୁଙ୍କର

ଏକାନ୍ତ ଆଶ୍ରିତ

ଶ୍ରୀ କରୁଣାକର ସାହୁ

# ଭୂମିକା ।

ଜ୍ଞାନହିଁ ଶ୍ରେୟ, ଜ୍ଞାନହିଁ ପ୍ରିୟ, ଜ୍ଞାନହିଁ ଅମୃତ, ଜ୍ଞାନହିଁ ଜୀବନର ମୁଖ୍ୟଉଦ୍ଦେଶ । ଏହିଜ୍ଞାନ ବିଭିନ୍ନ ସ୍ଥଳରେ ବିଭିନ୍ନ ଆକାରରେ——ସାହିତ୍ୟ, ବିଜ୍ଞାନ, କୃଷି, ଶିଳ୍ପ ପ୍ରଭୃତି ବିଷୟ ସକଳରେ ଯୁକ୍ତହୋଇ ସଜୀବତା ଓ କାର୍ଯ୍ୟକାରିତା ଶକ୍ତି ବୃଦ୍ଧି କରେ । ଅତିପ୍ରାଚୀନ କାଳରେ ସକଳ ଦେଶରେ ଜ୍ଞାନ ଉପାର୍ଜ୍ଜନର ପଥ ଏକ ଦେଶଦର୍ଶୀ ହୋଇ ଆସୁଥିଲା । କ୍ରମେ ସେହିଜ୍ଞାନ ସର୍ବତୋମୁଖୀ ହେବାକୁ ଲାଗିଲା । ଏହାହିଁ ଆଧୁନିକ ଯୁଗର ସଭ୍ୟତାର ଗୋଟିଏ ପ୍ରଧାନ ଲକ୍ଷଣ । ମାନବ ସବୁଦିନେ ଏକ ଅବସ୍ଥାରେ ରହି ତୃପ୍ତିଲାଭ କରି ନପାରେ । ସୁତରାଂ ଏହି ବୈଜ୍ଞାନିକ ଯୁଗରେ ଶିକ୍ଷାର କୌଶଳ ମଧ୍ୟ ଉନ୍ନତତର ହେବା ସ୍ୱାଭାବିକ ।

କୃଷିକାର୍ଯ୍ୟ କରିବାକୁ ହେଲେ କେତେ ଯତ୍ନରେ ବୀଜ ରୋପଣ କରାଯାଏ, ପୁଣି କେତେଯତ୍ନରେ ସାର, ଜଳ, ଆଲୋକ, ରୌଦ୍ର, ଆବଶ୍ୟକାନୁସାରେ ଦିଆଯାଏ, ଓ ଅଙ୍କୁର ଅତିସାବଧାନରେ କୀଟାଦିରୁ ରକ୍ଷା କରାଯାଏ । ଶିଶୁମାନଙ୍କର ଜ୍ଞାନୋନ୍ନତି ସହିତ ଶାରୀରିକ ଉନ୍ନତି ସମାନ ଭାବେ ଆବଶ୍ୟକ ।

ସେମାନେ ପ୍ରାକୃତିକ ଯେଉଁସବୁ ପଦାର୍ଥ ମଧ୍ୟରେ ଅବସ୍ଥାନ କରନ୍ତି, ସେ ସକଳ ସମ୍ବନ୍ଧେ ଅଭିଜ୍ଞତା ଓ ବହୁ ଦର୍ଶିତା ଏକାନ୍ତ ଆବଶ୍ୟକ । ଏହି ଶିକ୍ଷାଦାନ

କ୍ରୀଡାଛଳରେ ସ୍ୱାଭାବିକ ଶିଶୁଜାତ ଆନନ୍ଦରେ ତାହା ଗ୍ରହଣ କରି ଶିକ୍ଷାର ଉଦ୍ଦେଶ ସଫଳ କରନ୍ତୁ ।

ଏକଦା ସୁଇଜରଲାଣ୍ଡବାସୀ ପେଷ୍ଟାଲଜି ନାମକ ଏକଜଣ ପ୍ରତିଭାଶାଳୀ ମହାପୁରୁଷ ଶିଶୁଶିକ୍ଷାର ପୁରା-ତନ ପ୍ରଣାଳୀକୁ ତ୍ୟାଗକରି ଏକ ନୂତନ ପ୍ରଣାଳୀ ସୃଷ୍ଟି-କଲେ ।

ମହାତ୍ମା ଫ୍ରେଡ୍‌ରିକ ଫ୍ରୋବେଲ ୧୮ ୨୬ ଖ୍ରୀଃରେ ଏହାର ଗୂଢ଼ ତାତ୍ପର୍ଯ୍ୟ ଓ ଉପକାରିତା ସମ୍ବନ୍ଧେ ପ୍ରବ-ନ୍ଧାଦି ଲେଖି ଶିକ୍ଷିତ ସମାଜର ଦୃଷ୍ଟି ଆକର୍ଷଣ କଲେ । ଏହି ଶିକ୍ଷା ପ୍ରଣାଳୀକୁ କିଣ୍ଡାର ଗାର୍ଟେନ ଶିକ୍ଷା ବୋଲା-ଯାଏ, ଏହି ଶିକ୍ଷା ବର୍ତ୍ତମାନ ଉତ୍କଳରେ ପ୍ରଚଳିତ ହୋଇ-ଅଛି । ବିଦ୍ୟାଳୟ ମାନଙ୍କରେ କିଣ୍ଡାର ଗାର୍ଟେନ ଶିକ୍ଷାର ଉପକରଣ ମାନ ରଖାଯାଇଅଛି, ଶିକ୍ଷାବିଭାଗୀୟ ଉଚ୍ଚ କର୍ମଚାରୀ ମାନଙ୍କ ଉପଦେଶାନୁସାରେ ଶିକ୍ଷକମାନେ ବାଳକ ବାଳିକା ମାନଙ୍କଦ୍ୱାରା ଗଣିବା ଲେଖିବା ଉଦ୍ଭାବନ-ଇତ୍ୟାଦି କରାଇ ପଦାର୍ଥ ବିଜ୍ଞାନ ସହିତ ବିଦ୍ୟାଶିକ୍ଷା ପ୍ରଦାନ କରିଥାନ୍ତି, ସୁତରାଂ ଏହି ଶିକ୍ଷାଦ୍ୱାରା ଶିଶୁମା-ନଙ୍କୁ ଜ୍ଞାନୋନ୍ନତି ଓ କର୍ମ୍ମଶିକ୍ଷା ହୁଅଯାଏ, ଏହା ବାଳକ, ବାଳିକା, ପିତା, ମାତା, ଅଭିଭାବକ ଓ ଶିକ୍ଷକ ପ୍ରଭୃତି ସର୍ବାଗ୍ରେ ସମ୍ପୂର୍ଣ୍ଣରୂପେ ଜାଣିରଖିବା ଉଚିତ, ତାହା ନହେଲେ ଶିକ୍ଷାର ଉଦ୍ଦେଶ ସମ୍ପୂର୍ଣ୍ଣ ସଫଳ ହୋଇନପାରେ । ଅତଏବ ଏହି ଉଦ୍ଦେଶ ରେ 'କିଣ୍ଡାର ଗାର୍ଟେନ ବା ଶିଶୁଶିକ୍ଷା ବିଧାନ' ସଙ୍କଳନ କରିବାରେ ପ୍ରବୃତ୍ତ ହେଲି । ଏହିପୁସ୍ତକ ଦ୍ୱାରା ଯେ ସମସ୍ତ ଜ୍ଞାନ

ସଭହେବ ଏହାନୁହେଁ କେବଳ ବର୍ତ୍ତମାନ ସମୟୋପ-
ଯୋଗୀ ଶିଶୁମାନଙ୍କର ଅନେକ ଶିକ୍ଷଣୀୟ ବିଷୟ ଥିବା
ହେତୁ ଏହା ସାଧାରଣରେ ଆଦରଣୀୟ ହେବାର ଆଶା-
ରଖି ପ୍ରକାଶ କରିବାରେ ସାହସୀହେଲି ।

ଶ୍ରୀକରୁଣାକର ସାହୁ
ଦେବଦୁର୍ଗ, ବାମଣ୍ଡା
ତା। ୨୪ । ୫ । ୧୯୧୦



# କିଣ୍ଡରଗାର୍ଟେନ୍

## ବା

## ଶିଶୁଶିକ୍ଷା ବିଧାନ

ପୃଥିବୀର ପ୍ରାୟ ସକଳ ଦେଶରେ ଅର୍ଥୋପାର୍ଜ୍ଜନର ପ୍ରୟୋଜନ ନିମନ୍ତେ ଶିଶୁମାନଙ୍କୁ ସ୍ମୃତିଶକ୍ତିର ସାହାଯ୍ୟରେ ଲେଖାପଢ଼ା ଓ ଗଣିତ ଶିକ୍ଷା ଦିଆଯାଉଥାଏ। ଏହି ପ୍ରଣାଳୀ ବହୁକାଳରୁ ଜନସମାଜରେ ଏପରି ବଦ୍ଧମୂଳ ହୋଇଯାଇଅଛି ଯେ ଏହା ଅପେକ୍ଷା କୌଣସି ଶ୍ରେଷ୍ଠତର ଶିକ୍ଷାପ୍ରଣାଳୀର ଆବଶ୍ୟକତା ସାଧାରଣ ଲୋକେ ଉପଲବ୍ଧି କରିପାରନ୍ତିନାହିଁ। ସାଧାରଣ ଲୋକେ ଅନ୍ଧଭାବରେ ପ୍ରଚଳିତ ପ୍ରଥା ଅବଲମ୍ବନ କରନ୍ତି, କିନ୍ତୁ ପ୍ରତିଭାଶାଳୀ ମହାପୁରୁଷ ଏହିଁରେ ତୁଷ୍ଟ ହୁଅନ୍ତିନାହିଁ।

ସୁଇଜରଲଣ୍ଡ ଦେଶରେ ପେଷ୍ଟାଲଟ୍‌ସି ନାମରେ ଏକଜଣ ପ୍ରତିଭାଶାଳୀ ଶିକ୍ଷକ ଜନ୍ମଗ୍ରହଣ କରିଥିଲେ, ସେ ଶିଶୁଶିକ୍ଷାର ପୁରାତନ ପ୍ରଣାଳୀ ଛାଡ଼ି ଏକ ନୂତନ ପ୍ରଣାଳୀର ସୃଷ୍ଟି କଲେ। ପେଷ୍ଟାଲଟ୍‌ସି ଏହି ପ୍ରଣାଳୀର ସୃଷ୍ଟିକର୍ତ୍ତା ହେଲେହେଁ ମହାତ୍ମା ଫ୍ରୋବେଲ୍ ଏହାର ଗୂଢ଼ ତାତ୍ପର୍ଯ୍ୟ ଓ ଉପକାରିତା ବିଶେଷରୂପେ ବୁଝିଥିଲେ। ସେ ଉକ୍ତ ପ୍ରଣାଳୀରେ କାର୍ଯ୍ୟକରି ଏହାର ଉପକାରିତା ସମ୍ବନ୍ଧେ ପ୍ରକଟାଇ ଲେଖି ଶିକ୍ଷିତ ସମାଜର ଦୃଷ୍ଟି ଆକର୍ଷଣ କରିଥିଲେ।

ମହାତ୍ମା ଫ୍ରୋବେଲ ତାହାଙ୍କର ଶିକ୍ଷାପ୍ରଣାଳୀର ନାମଦେଇ ଅଛନ୍ତି, "କିଣ୍ଡାର ଗାର୍ଟେନ ଶିକ୍ଷା ପ୍ରଣାଳୀ" ଜର୍ମାନ ଭାଷାରେ "କିଣ୍ଡ" ଶବ୍ଦର ଅର୍ଥ ଶିଶୁ ଉହାର ବହୁବଚନରେ କିଣ୍ଡାର ହୁଏ, ଗାର୍ଟେନ ଶବ୍ଦ ଇଂରେଜୀ ଗାର୍ଡେନ ଶବ୍ଦର ସମାର୍ଥବାଚକ; ଏହାର ଅର୍ଥ ଉଦ୍ୟାନ ଅତଏବ "କିଣ୍ଡାର ଗାର୍ଟେନ" ଶବ୍ଦର ଅର୍ଥ ଶିଶୁଗଣର ଉଦ୍ୟାନ ବା ଶିଶୁଦ୍ୟାନ । ଉଦ୍ୟାନରେ ଯେପରି ବୀଜରୁ ଗଛ ସମସ୍ତ ଅଙ୍କୁରିତ ହୁଏ କ୍ରମଶଃ ପତ୍ରଶାଖା ଲାଭକରି ଫୁଲ ଫଳରେ ସୁଶୋଭିତ ହୁଏ ଶିଶୁମଧ୍ୟ ସେହିପରି ସ୍କୁଲରେ ଓ ଉଦ୍ୟାନସ୍ଥଳରେ ସ୍ୱାଭାବିକ ନିୟମରେ ସ୍ୱଚ୍ଛନ୍ଦଭାବେ ଜ୍ଞାନଲାଭ ଓ କର୍ମଶିକ୍ଷା କରୁଁ ୨ ଘଣା ସମାଜରେ ବଢ଼ନ୍ତି ୨ ଅଧିକ ମନୁଷ୍ୟହୁଅନ୍ତି । ଏହାହିଁ କିଣ୍ଡର ଗାର୍ଟେନ ପ୍ରଣାଳୀର ମୂଳମନ୍ତ୍ର ।

ଶିଶୁବିଦ୍ୟାଳୟ ସହିତ ଗୋଟିଏ ଫଳ ଫୁଲର ଉଦ୍ୟାନ ଥିଲାଭଳି ଏହାହିଁ ଫ୍ରୋବେଲଙ୍କର ଅଭିପ୍ରାୟଥିଲା, ଏବଂ ତାଙ୍କର ସ୍ୱପ୍ରତିଷ୍ଠିତ ବିଦ୍ୟାଳୟର ସମ୍ମୁଖରେ ମଧ୍ୟ ଏପରି ଉଦ୍ୟାନଥିଲା । ସେହି ଅର୍ଥରେ ସେ ଅଣିଂକଷ୍ଟରେ "କିଣ୍ଡାର ଗାର୍ଟେନ" ଶବ୍ଦର ବ୍ୟବହାର କରିଥିଲେ। ସହୃଦୟ-ଶିଶୁ-ପ୍ରକୃତି-ଦର୍ଶୀ ଫ୍ରୋବେଲ ସ୍ୱପ୍ରବର୍ତ୍ତିତ ଶିଶୁ ବିଦ୍ୟାଳୟରୁ ସେପରି ପୂର୍ବ ପ୍ରଚଳିତ କଠୋର ଶିକ୍ଷା ପ୍ରଣାଳୀର ସର୍ବ ପ୍ରକାର ବନ୍ଧନକୁ ମୁକ୍ତକରି ତତ୍ସ୍ଥାନରେ ଗୋଟିଏ କୋମଳ ସ୍ୱଚ୍ଛନ୍ଦ ନୂତନ ଶିକ୍ଷାପଦ୍ଧତିର ପ୍ରତିଷ୍ଠା କରି-

ଥିଲେ , ତଦ୍ରୂପ ସେ ସ୍କୁଲନାମର ବିଭୀଷିକାମୟୀ ସ୍କୁଲରୁ ଏହାକୁ ମୁକ୍ତକରି ଶିଶୁପ୍ରକୃତିର ଉପଯୋଗୀ କୋମଳ ନାମରେ ଅଭିହିତ କରିଥିଲେ । ଫ୍ରୋବେଲ ବୃକ୍ଷଜୀବନ ସହିତ ଶିଶୁଜୀବନର ତୁଳନା କରିଅଛନ୍ତି, ବୀଜରୁ ଅଙ୍କୁର ଉଦ୍ଗତହୁଏ , ସେହିଅଙ୍କୁର ସୂର୍ଯ୍ୟକିରଣ, ଜଳ,ବାୟୁ ପ୍ରଭୃତି ଗ୍ରହଣ-ପୋଷଣ କରି ପତ୍ରାବଳୀ ଶୋଭିତ କ୍ଷୁଦ୍ରବୃକ୍ଷ ଆକାର ଧାରଣ କରେ , ଏବଂ ସେହିବୃକ୍ଷ ନିଜର ସ୍ୱୀୟ ଅଭ୍ୟନ୍ତରୀଣ ଶକ୍ତି ବିକାଶକରି କ୍ରମେ ୨ ବର୍ଦ୍ଧିତ ହୋଇ ଫଳଫୁଲରେ ପରିଶୋଭିତ ହୋଇ ଅବଶେଷରେ ପୂର୍ଣ୍ଣ ପରିଣତି ଲାଭକରେ । ମାନବ ଶିଶୁ ମଧ୍ୟ ଆପଣାର ଅଭ୍ୟନ୍ତରରେ ସର୍ବାଙ୍ଗୀଣ ମନୁଷ୍ୟତ୍ୱରବୀଜ ନେଇ ଧରାତଳରେ ଜନ୍ମଗ୍ରହଣକରେ । ବାହ୍ୟଜଗତର ସଂସ୍ପର୍ଶରେ ସେହି ବୀଜରୁ ଧୀରେ ୨ ଅଙ୍କୁର ଉଦ୍ଗତହୁଏ । ଜନକ ଜନନୀର ସ୍ନେହ ମୃଦୁ ମଧୁର ପବନ ହିଲ୍ଲୋଳରେ , ସହୋଦର ସହୋଦରାର ଆଦର ନେହର ଶୀତଳବାରି ସିଞ୍ଚନରେ , ଆତ୍ମୀୟ ସ୍ୱଜନର ଶୁଭାକାଙ୍କ୍ଷାର ସୁସ୍ନିଗ୍ଧ ଆଲୋକରେ ସେହି ମନୁଷ୍ୟତ୍ୱର ଅଙ୍କୁର ସ୍ୱୀୟ ଅଭ୍ୟନ୍ତରସ୍ଥ ଶକ୍ତି ବିକାଶ କରି କ୍ରମେ ୨ ବର୍ଦ୍ଧିତ ହେଉଥାଏ, ଏବଂ ସୁଶିକ୍ଷା ଗୁଣରେ ଜ୍ଞାନ , ଭକ୍ତି , ଓ କର୍ମ ସୁଶୋଭିତ ହୋଇ ପରିଣତ ଜୀବନର ପୂର୍ଣ୍ଣ ମନୁଷ୍ୟତ୍ୱ ଲାଭକରେ । ବୃକ୍ଷ-ଶିଶୁ ଉଦ୍ୟାନ ମଧ୍ୟରେ ଯତ୍ନରେ ଲାଳିତ ପାଳିତହୁଏ । କୋମଳପ୍ରକୃତି ମାନବ-ଶିଶୁ ଯେଉଁ ବିଦ୍ୟାଳୟରେ ଶିକ୍ଷାଲାଭ କରିବ , ସେହି ବିଦ୍ୟାଳୟରେ ତାହାର ଶିକ୍ଷାପ୍ରଣାଳୀ ଶିଶୁର ଅଭ୍ୟନ୍ତରୀଣ ଶକ୍ତି ସମୂ-

ତରେ ସ୍ୱାଭାବିକ ଓ ସ୍ୱଚ୍ଛନ୍ଦ ବିକାଶପକ୍ଷେ ସମ୍ପୂର୍ଣ୍ଣ ଉପଯୋଗୀ ଓ ଅନୁକୂଳହେବ । ଏହାହିଁ ଫ୍ରୋବେଲ୍‌ଙ୍କର ଅଭିମତ , ଏଥିପାଇଁ ସେ ସ୍ୱପ୍ରତିଷ୍ଠିତ ଶିଶୁ-ବିଦ୍ୟାଳୟକୁ " କିଣ୍ଡାର ଗାର୍ଟେନ " ଆଖ୍ୟାଦାନ କରିଥିଲେ , ତାହାଙ୍କର ଶିଶୁ ବିଦ୍ୟାଳୟରେ ସେ ଯେଉଁ ପ୍ରଣାଳୀରେ ଶିକ୍ଷାଦାନ କରୁଥିଲେ ; ତାହାହିଁ ପାଶ୍ଚାତ୍ୟ ଜଗତରେ " କିଣ୍ଡାର ଗାର୍ଟେନ ପ୍ରଣାଳୀ"ନାମରେ ସୁବିଦିତ , ପେଷ୍ଟାଲଟ୍‌ସି ଅଥବା ଫ୍ରୋବେଲ୍‌ଙ୍କର ମତରେ ଶିକ୍ଷାର ପ୍ରଧାନ ଉଦ୍ଦେଶ କଣ ତାହା ପ୍ରଥମତଃ ଭଲକରି ବୁଝିଦେଖିବାକୁହେବ । ଗୋଟିଏ କଥାରେ କହିବାକୁଗଲେ ଶିଶୁର ସର୍ବାଙ୍ଗୀଣ କ୍ରମ ବିକାଶହିଁ ଶିକ୍ଷାଦାନର ପ୍ରକୃତ ଉଦ୍ଦେଶ , ଅର୍ଥାତ୍ ଯେଉଁ ଉପାୟରେ ଶିଶୁର ଶାରୀରିକ, ମାନସିକ ଓ ପ୍ରକୃତିଗତ ବୃତ୍ତିଗୁଡ଼ିକ ଏକ ସମୟରେ ଉନ୍ନତ ଦିଗକୁ ଅଗ୍ରସର ହୋଇପାରେ ତାହାହିଁ ଶିକ୍ଷାଦାନର ଶ୍ରେଷ୍ଠ ପ୍ରଣାଳୀ । ଯେଉଁ ଶିକ୍ଷା ପଦ୍ଧତିଦ୍ୱାରା ଶିଶୁର ଏହି ବିବିଧ ଅଙ୍ଗ ଏକାସଙ୍ଗରେ , ଏକସମୟେ ବିକଶିତ ହୁଏନାହିଁ ଅର୍ଥାତ୍ ଯାହାଦ୍ୱାରା ଗୋଟିଏ ବା ଦୁଇଟି ମାତ୍ର ଅଙ୍ଗର ବିକାଶ ହୁଏ ; ସେଶିକ୍ଷା ପଦ୍ଧତି ଉକ୍ତ ମହାତ୍ମାଗଣଙ୍କ ମତରେ ଅସମ୍ପୂର୍ଣ୍ଣ ଏବଂ ତନ୍ନିମିତ୍ତ ଅଗ୍ରାହ୍ୟ । ମନ , ଶରୀର ଓ ଆତ୍ମା ଏହିତିନୋଟିରୁ କୌଣସିଟି ବାଦଦେବାର ନୁହେଁ । ଯହିଁରେ ଏହି ତିନୋଟିର ଏକସଙ୍ଗେ ଉନ୍ନତିହୁଏ, ଫ୍ରୋବେଲ୍‌ଙ୍କର ଶିକ୍ଷାପଦ୍ଧତିର ତାହାହିଁ ମୂଳମନ୍ତ୍ର ।

ମନୁଷ୍ୟର ଶରୀରଅଛି , ମନଅଛି , ନୈତିକ ବୃତ୍ତିଅଛି ଓ ଧର୍ମ୍ମ ପ୍ରବୃତ୍ତି ଅଛି । ଏହାର

କୌଣସିଟିକୁ ବାଦଦେଲେ ମନୁଷ୍ୟ ଅସଲ ମନୁଷ୍ୟ ହୋଇ ନପାରେ । ସମସ୍ତ ଗୁଣଙ୍କ ଏକସଙ୍ଗେ ଫୁଟିଲେ ପୂର୍ଣ୍ଣ ମନୁଷ୍ୟତ୍ୱ ହୁଏ । ଏହି ଫୁଟି ଉଠିବା ନାମହିଁ ବିକାଶ । ମନୁଷ୍ୟର ଶରୀର ବିକଶିତହେବ, ମନବିକଶିତହେବ, ନୀତି ବିକଶିତହେବ, ଧର୍ମ ବିକଶିତ ହେବ, ଏହି ସମସ୍ତ ଗୁଣଙ୍କ ଏକସଙ୍ଗେ ବିକଶିତ ହେବାର ନାମ ସର୍ବାଙ୍ଗୀଣ ବିକାଶ । ଏହି ସର୍ବାଙ୍ଗୀଣ ବିକାଶହିଁ ମନୁଷ୍ୟତ୍ୱ । ଯାହାର ପ୍ରକୃତି ଯେତେ ତାହାର ବିକାଶ ତେତେହେବ । କିନ୍ତୁ ବିକାଶଟି ସର୍ବାଙ୍ଗୀଣ ହେବା ଆବଶ୍ୟକ । ଅନୁଶୀଳନରେ ଏପରି ବିକାଶ ସମ୍ଭବ ହୋଇଥାଏ ପୁନଃ ପୁନଃ ଚାଳନାରନାମ ଅନୁଶୀଳନ । ଶରୀର ଅନୁଶୀଳନ କଲେ ଶରୀରର ବିକାଶହୁଏ । ବୁଦ୍ଧିର ଅନୁଶୀଳନ କଲେ ବୁଦ୍ଧିର ବିକାଶହୁଏ । ହୃଦୟର ଅନୁଶୀଳନ କଲେ ପ୍ରେମ, ଭକ୍ତି, ଓ ସୌନ୍ଦର୍ଯ୍ୟବୋଧର ବିକାଶହୁଏ; ସତ୍ୟ, ନ୍ୟାୟ, ସଂଯମ ଓ କର୍ତ୍ତବ୍ୟ ବୁଦ୍ଧିର ଅନୁଶୀଳନକଲେ ନୈତିକ ଚରିତ୍ରର ବିକାଶହୁଏ, ପରହିତର ଅନୁଶୀଳନ କଲେ ସାମାଜିକ ଜୀବନ ବିକାଶ ଲାଭ କରେ ଏବଂ ଧର୍ମ ପ୍ରବୃତ୍ତିର ଅନୁଶୀଳନ କଲେ ଧର୍ମ ଜୀବନର ବିକାଶହୁଏ । ଏହି ସମସ୍ତ ଏକସଙ୍ଗେ ଅନୁଶୀଳନକଲେ ସମସ୍ତ ଗୁଣଙ୍କ ଏକସଙ୍ଗେ ବିକଶିତ ହୋଇ ପୂର୍ଣ୍ଣ ମନୁଷ୍ୟତ୍ୱ ସମ୍ପୂର୍ଣ୍ଣ ମାନବ ଜୀବନ ସୃଷ୍ଟିକରେ । ଆମ୍ଭେ ।ଦି ଯଦି ତାହାର କୌଣସିଟିକୁ ବାଦଦେଇ କୌଣସିଟି ଅନୁଶୀଳନ କରୁଁ, ତେବେ ପୂର୍ଣ୍ଣମନୁଷ୍ୟ ଅସଲ ମନୁଷ୍ୟ ପାଇବୁ ନାହିଁ ଅଧେ-ଚଉଠେ, ଅଥବା

ତହିଁରୁ ଜନ୍ମ ମନୁଷ୍ୟ ପାଇବୁଁ । କିନ୍ତୁ ସମ୍ପୂର୍ଣ୍ଣ ମନୁଷ୍ୟତ୍ୱହିଁ ଆମ୍ଭମାନଙ୍କର ଉଦ୍ଦେଶ । ସମ୍ପୂର୍ଣ୍ଣ ମନୁଷ୍ୟତ୍ୱ ଲାଭପାଇଁ ଆମ୍ଭମାନଙ୍କୁ ଅନୁଶୀଳନ କରିବାକୁ ହେବ । ଏହି ସର୍ବାଙ୍ଗୀଣ ମନୁଷ୍ୟତ୍ୱ ବିକାଶହିଁ ଫ୍ରୋବେଲଙ୍କର ଶିକ୍ଷାପ୍ରଣାଳୀର ଉଦ୍ଦେଶ । ଯହିଁରେ ମାନବର ଏକାଧାରେ ଶାରୀରିକ , ମାନସିକ , ନୈତିକ ସର୍ବବିଧ ବୃତ୍ତିର ସ୍ୱତନ୍ତ୍ର ଏବଂ ସମଞ୍ଜସୀଭୂତ , ଅନୁଶୀଳନ ଦ୍ୱାରା ପରିଣାମରେ ତାହାକୁ ସର୍ବାଙ୍ଗୀଣ ପୂର୍ଣ୍ଣ ମନୁଷ୍ୟତ୍ୱ ଉପଲାଭ କରିପାରେ, ଶିଶୁକାଳରେ ତହିଁର ସୂତ୍ରପାତ କରିବାହିଁ କିଣ୍ଡର ଗାର୍ଟେନ ଶିକ୍ଷାପ୍ରଣାଳୀର ଉଦ୍ଦେଶ । କିଣ୍ଡର ଗାର୍ଟେନ ପ୍ରଣାଳୀର ତତ୍ତ୍ୱ ଅତିଗଭୀର , ଶିଶୁ ପ୍ରକୃତିର ନିଗୂଢ଼ ସ୍ଥାନରେ ତାହାରମୂଳ ପ୍ରୋଥିତ ଏବଂ ଏହାବହୁଶାଖା ନେଇ ବିସ୍ତୃତ । ଏହାରତତ୍ତ୍ୱ ବୁଝିବାକୁ ହେଲେ ଅଧ୍ୟବସାୟ, ଅଧ୍ୟୟନ, ଚିନ୍ତା ଏବଂ ଶିଶୁର ସ୍ୱଭାବ ଅଚରଣର ନିପୁଣ ପର୍ଯ୍ୟବେକ୍ଷଣ ଆବଶ୍ୟକ । ଶିଶୁର ମନ ସାଦାକାଗଜ ପରି ନୁହେ ଯେ ତହିଁରେ ଯାହାଖୁସି ଲେଖାଯିବ ଏବଂ ତାହାହିଁ ତହିଁରେ ଚିରମୁଦ୍ରିତ ହୋଇ ରହିବ । ଅଥବା ଏହା ନରମ ମାଟି ପରି ନୁହେ ଯେ ତାହାକୁ ଯେପରି ଇଚ୍ଛା ଆକାର ପ୍ରଦାନ କରାଯିବ । ଶିଶୁର ଶରୀର ସଜୀବ ଓ ମନ ଚେତନ, ଭିତରରୁ ନିଜର ନିଗୂଢ଼ ଶକ୍ତିରେ ଏମାନେ ବଢ଼ିଉଠନ୍ତି । ବୃକ୍ଷଟି ବୀଜରୁ ଯେପରି ଧୀରେ ୨ ଉଦ୍ଭିନ୍ନହୁଏ ଓ ବଢ଼ିଉଠେ ଶିଶୁର କ୍ଷୁଦ୍ର ଦେହ ମନ ମଧ୍ୟ ସେହିପରି କ୍ରମଶଃ ଅଙ୍କୁରିତ ଓ ବିକଶିତ ହୋଇ ପରିଣାମରେ ପୂର୍ଣ୍ଣାବୟବ ପ୍ରାପ୍ତହୁଏ ।

ଏହି ମୃଦୁ ଦେହ ଓ ମନର ବୃତ୍ତି ଗୁଡ଼ିକ କ୍ରମ ନିୟମରେ ବିକଶିତ ହୁଏ ତାହା ଜ୍ଞାତହୋଇ ତାହାମଧ୍ୟରେ ଶିଶୁକୁ ସ୍ଥାପିତକଲେ ସେ ନିଜେ ୨ ଜ୍ଞାନ ଲାଭକରେ , ବଳଲାଭକରେ ଓ କର୍ମଶୀଳ ହୋଇଉଠେ । ଶିଶୁ-ଜୀବନରେ ପ୍ରଥମାବଧି କର୍ମ୍ମଶୀଳତାର ପ୍ରକାଶ ଦେଖା ଯାଏ । ଭୂମିଷ୍ଠ ହେବାଠାରୁ ସେ ହାତ ପାଦ ଫିଙ୍ଗି ଶରୀର ଚାଳନାକରେ ଏବଂ ହସି କାନ୍ଦି ଇଙ୍ଗିତରେ ଓ ଅଙ୍ଗ-ଭଙ୍ଗୀକରି ବୁଦ୍ଧି , ମନୋଭାବ ଓ ଇଚ୍ଛାର ପରିଚୟ ପ୍ରଦାନ କରେ । କ୍ରମେ ତାହାର ଚକ୍ଷୁ ମୁଖ , ନାକ , କାନ , ଖୋଲେ ଅର୍ଥାତ୍ ଇନ୍ଦ୍ରିୟ ଶକ୍ତିର ଉନ୍ମେଷହୁଏ ଏବଂ ଅନ୍ତରରେ ବୁଦ୍ଧି , ଚିନ୍ତା , ସ୍ମୃତି , କଳ୍ପନା, ଅନୁସନ୍ଧିତ୍ସା ସୁଖ ଦୁଃଖରେ ଦୟା କୃତଜ୍ଞତା ବିକାଶ ଲାଭକରେ । ସଙ୍ଗେ ୨ ତାହାର ଇଚ୍ଛାଶକ୍ତି ବିକଶିତହୋଇଉଠେ , ଏବଂ ତାହାର କ୍ଷୁଦ୍ରହାତ ଦୁଇଗୋଟି ନାନାବସ୍ତୁ ଧରୁ-ଥାଏ । ଇନ୍ଦ୍ରିୟ ବୋଧ ଓ ମନୋବିକାଶ କର୍ମ୍ମଶୀଳତାର ସହିତ ଗ୍ରନ୍ଥିତ, କର୍ମ୍ମକୁ ପରିହାରକରି ଇନ୍ଦ୍ରିୟ ବୋଧ ଓ ମନୋବୃତ୍ତିର ଉନ୍ମେଷ ହୁଏନାହିଁ ।

ଶିଶୁ ସ୍ୱଭାବର ସନ୍ତାନ । ପ୍ରଥମରୁ ସେ ପ୍ରକୃତିର କ୍ରୋଡ଼ରେ ଲାଳିତ ପାଳିତ ହୁଏ ଓ ଶିକ୍ଷାଲାଭ କରେ । ଯେଉଁ ସ୍ଥାନରେ ଫୁଲଟି ଫୁଟେ , ପକ୍ଷୀ ଡାକେ , ବାଛୁରି ଡିଆଁଡି ଖେଳା-କରେ , ଶିଶୁ ସେହି ସ୍ଥାନକୁ ଦଉଡ଼ି ଯାଏ । ଯେଉଁ-ଠାରେ ଜଳରେ ମାଛ ଭାସେ ; ହଂସ ସନ୍ତରଣ କରେ ଗେଣ୍ଡା ଶାମୁକା ଧୀରେ ୨ ମୁଖଖୋଲେ ,

ଶିଶୁ ସେହିସ୍ଥାନକୁ ନାଚି ୨ ଚାଲିଯାଏ । ଯେତେ
ବେଳେ ନୀଳାକାଶରେ ଚନ୍ଦ୍ର ଉଦୟହୁଏ, ନକ୍ଷତ୍ର ଦେଖା-
ଯାଏ, ଛାୟାପଥ (Milkway) ପ୍ରକାଶିତହୁଏ, ଶିଶୁର
ନବୀନ ଚକ୍ଷୁ ଆନନ୍ଦରେ ଓ ବିସ୍ମୟରେ ସେହିଆଡ଼କୁ
ଚାହିଁଥାଏ । ଏହି ଚିରସୁନ୍ଦର ; ଚିରନବୀନ ; ଚିରମ-
ହୀୟ ବିଶ୍ୱରାଜ୍ୟର ସୌନ୍ଦର୍ଯ୍ୟ ଓ ଜ୍ଞାନ ଶିଶୁର ନୂତନ
ନିର୍ମଳ ମୁଗ୍ଧ ବିସ୍ଫାରିତ ନେତ୍ରରେ ଯେପରି ପ୍ରତିଭାତ
ହୁଏ ସଂସାର ଚିନ୍ତାକ୍ଲିଷ୍ଟ ଜ୍ୟୋତିହୀନ ଚକ୍ଷୁରେ ତାହାର
ଶତାଂଶର ଏକାଂଶ ମଧ୍ୟ ହୁଏନାହିଁ । ପ୍ରକୃତି ମଧ୍ୟରେ
ବସି ଆମ୍ଭେମାନେ ଯେଉଁଠାରେ କେବଳ ଶାଖା
ବାଇଗଣ ଲତ୍ ଦେଖୁଁ ; ଶିଶୁ ସେଠାରେ ପ୍ରାଣ-
ଦେଖେ, ସୌନ୍ଦର୍ଯ୍ୟ ଦେଖେ, ଅନନ୍ତଙ୍କୁ ଅନୁଭବ
କରେ । ଏହି ବିଶ୍ୱ ଶିଶୁ ନିକଟରେ ପ୍ରାଣ ଓ ସୌନ୍ଦର୍ଯ୍ୟ
ପରିପୂର୍ଣ୍ଣ । ଅତଏବ ଯେତେବେଳେ ଶିଶୁର ଦେହ
ପୁଷ୍ଟ ଓ ବଳିଷ୍ଠ ହେବାପାଇଁ କେବଳ କର୍ମଶୀଳତା
ଚାହେଁ ସେତେବେଳେ ତାହାକୁ ଯଥେଷ୍ଟ ପୁଷ୍ଟିକର
ଆହାର ଦିଅ ଏବଂ ଅବାଧେ ଦଉଡ଼ା ଦଉଡ଼ି ଡିଆଁ-
ଡେଇଁ ଓ ଚିତ୍କାର କରି ଖେଳିବାକୁ ଦିଅ, ଦେଖିବ
ତାହାର ଶରୀର ନିଜେ ୨ କିପରି ସୁନ୍ଦର ରୂପେ
ଗଢ଼ାହେଉଅଛି । ଜଗତର ବିଚିତ୍ର ରୂପରସ ଶବ୍ଦ
ସ୍ପର୍ଶ ଓ ଗନ୍ଧ ମଧ୍ୟରେ ତାହାକୁ ଛାଡ଼ିଦିଅ , ତାହାର
ଇନ୍ଦ୍ରିୟ ବୋଧକୁ ଉନ୍ମେଷିତ କର , ଓ ହୃଦୟକୁ
ବିମଳ ଆନନ୍ଦର ସଞ୍ଚାର କରିଦିଅ । ନାନାବସ୍ତୁ ଓ
ଘଟଣା ସମ୍ବନ୍ଧେ ସେ ଯେତେବେଳେ ସରଳ ଓ

ସ୍ୱାଭାବିକ ଭାବେ ପ୍ରଶ୍ନର ପରେ ପ୍ରଶ୍ନ କରୁଥାଏ, ସେତେବେଳେ ଅତିସହଜ ଭାଷାରେ ସେହି ସକଳ ପ୍ରଶ୍ନର ସଙ୍ଗତ ଓ ସଦ୍ୟ ଉତ୍ତରଦିଅ; କେବଳ ତାହା ନୁହେ, ପର୍ଯ୍ୟବେକ୍ଷଣ ଓ ପରୀକ୍ଷା ଦ୍ୱାରା ତାହାକୁ ନିଜେ ସେହି ସକଳ ତତ୍ତ୍ୱର ମୀମାଂସା କରିନେବାର ସୁଯୋଗ ଦିଅ। ଆଉ ଏହି ମହୁମାଛିଟି ଯେପରି ଫୁଲ ଫଳରୁ ମଧୁ ସଂଗ୍ରହ କରୁଅଛି ସେପରି ତାହାକୁ ଜଗତର ପ୍ରତ୍ୟେକ ସୁନ୍ଦର ଓ ସଜୀବ ପଦାର୍ଥର ସୌନ୍ଦର୍ଯ୍ୟ ପାନ କରିବାକୁ ଦିଅ, ଏହି ପ୍ରଜାପତିଟି ପରି ଆନନ୍ଦରେ ବାହୁ ବିସ୍ତାର କରି ତାହାକୁ ନୀଳାକାଶ ତଳେ ଉଜ୍ଜ୍ୱଳ ସୂର୍ଯ୍ୟ କିରଣରେ ମୁକ୍ତ ବାୟୁରେ ନାଚି ବୁଲିବାକୁ ଛାଡିଦିଅ। ଶିଶୁର ମୁଗ୍ଧ ନେତ୍ର ଜଡ ଉଦ୍ଭିଦ ବା ପ୍ରାଣି-ଜଗତର ଯେ କୌଣସି ବସ୍ତୁ ପ୍ରତି ପତିତ ହୁଏ, ତାହାଁର ସ୍ୱଭାବ ସହିତ ତାହାର ଘନିଷ୍ଠ ପରିଚୟ କରାଇ ଦିଅ ବିଶାଳ ଧରଣୀ ବକ୍ଷରେ ଠିଆ ହୋଇ ଶିଶୁ ଅନୁଭବ କରୁ, ନୀଳା କାଶରେ ପ୍ରାଣଅଛି, ଜଳ ତରଙ୍ଗରେ ପ୍ରାଣ ଲୁଚିଅଛି, ଇତର ଜୀବ ମଧ୍ୟରେ ତାହାର ପରି ପ୍ରାଣ ଇସାରା ଦେଉଅଛି। ଠେଲୁଆଟିକୁ ପୋଷି, ଗାଈର ଶରୀରରେ ହାତ ବୁଲାଇ, ଫୁଲ ଗଛରେ ଜଳ ସେଚନ କରି; ପତ୍ର, ଲତା, ଫୁଲ, ଫଳ, ପକ୍ଷୀର ଡେଣା, କଉଡ଼ି, ଶାମୁକା, ସଂଗ୍ରହ କରି, ପଡିଆରେ ବୁଲି, ବଗିଚା ୨ ଭ୍ରମଣ କରି ଶିଶୁକୁ ଜ୍ଞାନ, ପ୍ରୀତି, ଆନନ୍ଦ ଓ କର୍ମର ସାଧନା କରିବାକୁ ଦିଅ। ତାହାପରେ ଗୃହ ମଧରେ ଓ ବିଦ୍ୟା-

ଲକ୍ଷ୍ୟରେ ତାହାର ହାତ ନିକଟରେ ଏପରି ସକଳ କାର୍ଯ୍ୟ ଅଣିଦିଅ, ଯାହା କରି ସେ ମାନବ ଜୀବନ ଓ ମାନବ ସମାଜର ଦାୟିତ୍ୱ ଓ ମହତ୍ତ୍ୱ ବୁଝିବାକୁ ଶିଖିବ ଏବଂ କ୍ରମଶଃ କର୍ମ୍ମ ଓ ସଂଯମ ସାଧନାରେ ନୀତି ଓ ଧର୍ମ୍ମର ସାଧନାରେ ସୁନ୍ଦର ଦୃଢ଼ ବଳିଷ୍ଠ ଓ କର୍ମଠ ଯୌବନ ଲାଭ କରିବ । ପ୍ରକୃତି ମଧ୍ୟରେ ଶିଶୁକୁ ଈଶ୍ୱରଙ୍କ ସମୀପକୁ ଉପନୀତ କରି ଦେବା ଏବଂ କର୍ମ୍ମର ମଧ୍ୟରେ ତାହାକୁ ବିଶାଳ ମାନବ ସମାଜର ପଥ ଦେଖାଇବା ଶିକ୍ଷାର ପ୍ରକୃତ ଉଦ୍ଦେଶ୍ୟ । ଏହାହିଁ କିଣ୍ଡର ଗାର୍ଟେନ ଶିକ୍ଷା ପ୍ରଣାଳୀର ସାରମର୍ମ୍ମ ।

କିଣ୍ଡର ଗାର୍ଟେନ ଶିକ୍ଷା ପ୍ରଣାଳୀର ପ୍ରବର୍ତ୍ତକ ମହାତ୍ମା ଫ୍ରେଡରିକ ଫ୍ରୋବେଲ ଶିଶୁ ପ୍ରକୃତିର ଗୋଟିଏ ନିଗୂଢ଼ ତଥ୍ୟ, ଶିଶୁ ଜୀବନ ବିକାଶର ଗୋଟିଏ ମୂଳ ସୂତ୍ର ନିର୍ଦ୍ଧାରଣ କରି ଦେଇ ଅଛନ୍ତି । ତାହା । ଶିଶୁର ସ୍ୱାଭାବିକ କର୍ମ୍ମଶୀଳତା । ସ୍ପ୍ରିଂ ( Spring ) ଶକ୍ତିରେ ଯେପରି ଘଣ୍ଟାର ସକଳ ଚକ ଗୁଡିକ ବୁଲେ, ଏହି ସ୍ୱାଭାବିକ କର୍ମ୍ମଶୀଳତା ପ୍ରଭାବରେ ସେପରି ଶିଶୁର ଶାରୀରିକ, ମାନସିକ, ନୈତିକ ଓ ଧର୍ମ୍ମ ବୃତ୍ତି ଗୁଡିକ ଏକଯୋଗେ ବିକାଶ ଲାଭ କରେ । ଏହିପରି ସମ୍ପୂର୍ଣ୍ଣ ଅଖଣ୍ଡ ମନୁଷ୍ୟ ଗଢ଼ିବା ପାଇଁ କିଣ୍ଡର ଗାର୍ଟେନ ଶିକ୍ଷା ପ୍ରଣାଳୀ ସୁନ୍ଦର ଆୟୋଜନ କରି ଶୈଶବରେ ମାନବର କର୍ମ୍ମଶୀଳତାକୁ ଜାଗ୍ରତ କରିଦିଏ । ଏହି କର୍ମ୍ମଶୀଳତାକୁ ଶୈଶବରେ ଧ୍ୱଂସ ବା ବିକୃତ କରିଦେଲେ ମନୁଷ୍ୟତ୍ୱର ବିକାଶ ହୋଇ ନପାରେ ।

ଫ୍ରୋବେଲ ତାହାଙ୍କର ଅଭିନବ ଶିଶୁ ଶିକ୍ଷା ପ୍ରଣାଳୀଟି ଶିଶୁ ପ୍ରକୃତିର କେତେ ଗୋଟିଏ ମୂଳ ତତ୍ତ୍ୱ ଉପରେ ପ୍ରତିଷ୍ଠିତ କରି ଅଛନ୍ତି । ଶିଶୁ ପ୍ରକୃତିର ବିଶିଷ୍ଟ ପର୍ଯ୍ୟବେକ୍ଷଣ ଓ ପର୍ଯ୍ୟାଲୋଚନା ଦ୍ୱାରା ସେ ଯେଉଁ ସକଳ ସିଦ୍ଧାନ୍ତରେ ଉପନୀତ ହୋଇ ଅଛନ୍ତି, ତାହାହିଁ ତାଙ୍କର ଶିକ୍ଷା ନୀତିର ମୂଳସୂତ୍ର । ଯଥାକ୍ରମେ ସେହି ମୂଳସୂତ୍ର ଗୁଡିକ ଉଲ୍ଲେଖ କରା-ଯାଉଅଛି ।

୧–ଶିଶୁର ଶରୀର ଓ ଶ୍ରମ ପ୍ରବଣତା —

ଶିଶୁ ସୁକୋମଳ ଦେହନେଇ ଧରାତଳରେ ଜନ୍ମ ଗ୍ରହଣ କରେ, ଏବଂ ଭୂମିଷ୍ଠ ହେବାଠାରୁ ଜନନୀର ସ୍ତନ୍ୟ ପାନରୁ ଆରମ୍ଭ କରି ସ୍ୱାଭାବିକ ଅଙ୍ଗ ସଞ୍ଚା-ଳନ ଓ ବିବିଧ କାର୍ଯ୍ୟ କ୍ରୀଡ଼ାର ମଧ୍ୟଦେଇ ଏହି ଶ୍ରମ ପ୍ରବଣତାର ପରିଚୟ ପ୍ରଦାନ କରେ ଏବଂ ବୟୋ-ବୃଦ୍ଧିର ସଙ୍ଗେ ୨ ଉତ୍ତରୋତ୍ତର ପ୍ରକୃଷ୍ଟ ପ୍ରଣାଳୀ ଅନୁସାରେ ସ୍ୱକୀୟ ଜୀବନ ଧାରଣ ଓ ସାମାଜିକ-କଲ୍ୟାଣ ସାଧନୋପଯୋଗୀ ଶ୍ରମ ଶୀଳତାରେ ଅଭ୍ୟସ୍ତ ହୋଇ ପରିଣତ ବୟସରେ ପୂର୍ଣ୍ଣ ଶାରୀରିକ ବିକାଶ ଲାଭ କରିଥାଏ ।

୨ – ଦେହ ଓ ମନର ଘନିଷ୍ଠ ସମ୍ବନ୍ଧ —

ଶିଶୁର ଶାରୀରିକ ଓ ମାନସିକ ପ୍ରକୃତି, ଗୋଟିକ ସହିତ ଅନ୍ୟଟି ଅପରିହାର୍ଯ୍ୟ ସମ୍ବନ୍ଧରେ ଆବଦ୍ଧ । ଶାରୀ-ରିକ ବୃତ୍ତିର ସ୍ୱଚ୍ଛନ୍ଦ ବିକାଶ ମନୋବୃତ୍ତି ବିକାଶର ଅପରିହାର୍ଯ୍ୟ ଉପାୟ । ପୁଣି ମନୋବୃତ୍ତି ନିଚୟର ସ୍ୱାଭା-

ହାର ସ୍ଫୂର୍ତ୍ତି ଓ ତନ୍ନିମିତ୍ତ ଆନନ୍ଦ ନହେଲେ ଶାରୀରିକ ଶକ୍ତି ଓ ସ୍ୱାସ୍ଥ୍ୟ ସଙ୍କୁଚିତ ହୋଇ ପଡ଼େ ।

**୩- ଇନ୍ଦ୍ରିୟ ବିକାଶ-**ଭୂମିଷ୍ଠ ହେବାମାତ୍ରେ ବାହ୍ୟ ଜଗତସ୍ଥ ବିବିଧ ପଦାର୍ଥର ସଂସ୍ପର୍ଶରେ ଶିଶୁର ଇନ୍ଦ୍ରିୟ ବିକାଶ ଆରମ୍ଭ ହୁଏ , କ୍ରମେ ୨ ତାହାର ଦର୍ଶନ , ସ୍ପର୍ଶନ , ଶ୍ରବଣ , ଘ୍ରାଣ , ଆସ୍ୱାଦନ , ସ୍ଫୁଟତର ହୋଇଥାଏ, ଏବଂ ସେହି ଫଳରେ ସେ ଜଡ଼ ଜଗତ ସମ୍ବନ୍ଧେ ବିବିଧ କ୍ଷୁଦ୍ର କ୍ଷୁଦ୍ର ଅଭିଜ୍ଞତା ଲାଭକରେ । ମନବୃତ୍ତି ନିଚୟ ଇନ୍ଦ୍ରିୟ ପଥରେ ବାହ୍ୟ ଜଗତର ରୂପ, ରସ, ଶବ୍ଦ, ସ୍ପର୍ଶ, ଗନ୍ଧର ଜ୍ଞାନ ଲାଭକରି ବିକଶିତ ହୋଇଥାଏ ।

**୪- ସୌନ୍ଦର୍ଯ୍ୟ ବୋଧ-**ଶିଶୁର ଚକ୍ଷୁ , କର୍ଣ୍ଣ , ନାସିକା , ଜିହ୍ୱା , ତ୍ୱକର ଶକ୍ତି ବିକଶିତ ହେଲେ ସେ ଯେପରି ଏକ ସଜୀବ ସୁନ୍ଦର ଆନନ୍ଦୋଚ୍ଛ୍ୱସିତ ରହସ୍ୟ ପରିପୂର୍ଣ୍ଣ ଜଗତକୁ ଅସି ଠିଆହୁଏ । ବୃକ୍ଷ ଲତାର ବିବିଧ ସଜ୍ଜା ପଶୁ ପକ୍ଷୀ କୀଟ ପତଙ୍ଗର ବିବିଧ ଗଠନ ଭଙ୍ଗୀ ଓ ଭାବଗତି, ଚନ୍ଦ୍ର ତାରକାର ଅପୂର୍ବ ଶୋଭା , ଫଳ ସମୂହର ବିଭିନ୍ନ ରସ ଓ ବିବିଧ ବର୍ଣ୍ଣ ପୁଷ୍ପରାଜିର ବିବିଧ ଗନ୍ଧ ତାହାର ସୁପ୍ତ ସୌନ୍ଦର୍ଯ୍ୟ ବୋଧକୁ ଜାଗରିତ କରିଦିଏ ; ଏବଂ ତାହାର ବିସ୍ମୟ ବିମୁଗ୍ଧ ଅସ୍ଫୁଟ ମନ ମଧ୍ୟରେ ଅଭୂତ ପୂର୍ବ ଆନନ୍ଦର ସଞ୍ଚାର କରେ ।

**୫- ପର୍ଯ୍ୟବେକ୍ଷଣ ଓ ପରୀକ୍ଷା-** ଶିଶୁ ଯେପରି ସ୍ୱଚେଷ୍ଟା ଓ ସ୍ୱାବଲମ୍ବନରେ ପ୍ରତ୍ୟକ୍ଷ ପରୀକ୍ଷା ଦ୍ୱାରା ସ୍ୱୀୟ ଅନ୍ତରୋତ୍ଥିତ ପ୍ରଶ୍ନାବଳୀର ପ୍ରକୃତ ଉତ୍ତର ଲାଭ କରିପାରେ , ତନ୍ନିମିତ୍ତ ପ୍ରକୃତ ତାହାର ଅନ୍ତରରେ

ପର୍ଯ୍ୟବେକ୍ଷଣ ଶକ୍ତି ନିହିତ କରି ଦେଇ ଅଛନ୍ତି । ଏହା-ଦ୍ୱାରା ପରିଚାଳିତ ହୋଇ ସେ ନିରବରେ ଆପେ ଆପେ ବିବିଧ ବସ୍ତୁର ସ୍ୱରୂପ ଓ ବିବିଧ ଘଟଣାର ପ୍ରକ୍ରିୟା ପର୍ଯ୍ୟା-ଲୋଚନା କରିଥାଏ ।

୬ - କୌତୂହଳ ଓ ଅନୁସନ୍ଧିତ୍ସା—

ସୌନ୍ଦର୍ଯ୍ୟ ବୋଧ ବିକଶିତ ହେଲେ ତାହା ଶିଶୁର ମନରେ କୌତୂହଳର ଉଦ୍ରେକ କରେ । ସେ ବେଳେ-ବେଳେ ମନେ ମନେ ଆତ୍ମୀୟ ସ୍ୱଜନଙ୍କୁ ପ୍ରଶ୍ନ କରି ତାହାର ଧାରଣାର ଅନ୍ତର୍ଗତ ଯାବତୀୟ ବସ୍ତୁର ତତ୍ତ୍ୱ ଓ ଯାବତୀୟ ଘଟଣାର କାରଣ ଅନୁସନ୍ଧାନ କରୁଥାଏ । ଗୋଟିଏରୁ ଆଉ ଗୋଟିଏ ଭିତରୁ ଆଉ ଗୋଟିଏ ପ୍ରଶ୍ନ ଉତ୍ଥାପିତ କରି କରି ବସ୍ତୁ ବା ଘଟଣାର କାର୍ଯ୍ୟ କାରଣ ଶୃଙ୍ଖଳା ନିର୍ଣ୍ଣୟ କରୁଥାଏ ।

୭ - କର୍ମ ପ୍ରବଣତା ଓ କ୍ରୀଡାଶୀଳତା-

ପର୍ଯ୍ୟବେକ୍ଷଣ ଓ ପରୀକ୍ଷା ଦ୍ୱାରା ଶିଶୁ କୌଣସି ସିଦ୍ଧା-ନ୍ତରେ ଉପନୀତ ହେବା ମାତ୍ରେ ପ୍ରକୃତି ତାହାର ସେହି ସିଦ୍ଧାନ୍ତକୁ କାର୍ଯ୍ୟରେ ପରିଣତ କରିବାର ଶକ୍ତି ପ୍ରଦାନ କରୁଥାନ୍ତି । ସେ ତାହାର ପର୍ଯ୍ୟବେକ୍ଷଣ ଓ ପରୀକ୍ଷା ଲବ୍ଧ-ଜ୍ଞାନକୁ ଅନବରତ କ୍ରୀଡା ଆକାରେ କାର୍ଯ୍ୟରେ ପରି-ଣତ କରୁଥାଏ । ତାହାର ଅନ୍ତର ମଧ୍ୟରେ କ୍ରୀଡ଼ା ଶୀଳତା ଦ୍ୱାରା, ସକ୍ରିୟତା ଦ୍ୱାରା, ଉଦ୍ୟମ ଶୀଳତା ଦ୍ୱାରା, ଗୋଟିଏ ଉତ୍ସ ପ୍ରଚ୍ଛନ୍ନ ଅଛି । ଭିତରୁ ଅବିଶ୍ରାନ୍ତ ପ୍ରବାହରେ ଶକ୍ତି ନିଃସୃତ ହୋଇ ଶିଶୁ ଜୀବନରେ ବିବିଧ କ୍ରୀଡାର ସୃଷ୍ଟି କରୁଥାଏ । ଶିଶୁର ଯେଉଁ

ଅନ୍ତର୍ନିହିତ କର୍ମ ପ୍ରବଣତା ଏହି ପ୍ରକାର ଉପମାର କ୍ରୀଡ଼ା ନଚର୍ଯ୍ୟର ସୃଷ୍ଟି କରେ, ତାହାହିଁ ପରିଣାମରେ ବିଭିନ୍ନ ଶ୍ରମ ବିଭାଗରେ ବିବିଧ ଶିଳ୍ପକାର୍ଯ୍ୟ ଚାଷ ବା ସ୍ଥାପତ୍ୟ କାର୍ଯ୍ୟରେ କେନ୍ଦ୍ରୀଭୂତ ହୋଇ ବାଲ୍ୟଜୀବନର ବ୍ୟବହାରରେ ପ୍ରଯୁକ୍ତ ହୁଏ ।

## ୮ - ନୈତିକ ଓ ସାମାଜିକ ବୃତ୍ତି—

ଶିଶୁର ଅନ୍ତରରେ ଦୟା, ସ୍ନେହ, ଭକ୍ତି, ବାଧ୍ୟତା ବିନୟ, ସୌଜନ୍ୟ, କ୍ଷମା, ପ୍ରଭୃତି ନୈତିକ ଓ ସାମାଜିକ ବୃତ୍ତି ସମୂହର ବୀଜ ନିହିତ ଅଛି । ଶିଶୁ ଅନ୍ଧ ଭିକ୍ଷାରୀର କାତର କଣ୍ଠ ନିଃସୃତ ସଙ୍ଗୀତ ଶ୍ରବଣ କରି କ୍ରୀଡା ପରିତ୍ୟାଗ ପୂର୍ବକ କ୍ଷଣ କାଳପାଇଁ ସଜଳ ନୟନରେ ତାହାପ୍ରତି ଦୃଷ୍ଟିପାତ କରେ । କ୍ଷୁଦ୍ର ସରଳାବାଳା ବସ୍ତ୍ର ପ୍ରାର୍ଥୀ ଦୀନ ଦୁଃଖୀକୁ ନିଜ କ୍ରୀଡା ଗୃହରୁ ପୁତ୍ତଳିକାର ପରିଧେୟ କ୍ଷୁଦ୍ର ଚୀର ଖଣ୍ଡ ଆଣି ସକରୁଣ ନୟନରେ ପ୍ରଦାନ କରେ । କ୍ରୀଡା କ୍ଷେତ୍ରରେ ଦୁର୍ବଳ ବାଳକ ସବଳ ବାଳକ କର୍ତ୍ତୃକ ଉତ୍ପୀଡ଼ିତ ହେଲେ, ଅନ୍ୟାନ୍ୟ ବାଳକମାନେ ଦୁର୍ବଳର ପକ୍ଷ ଅବଲମ୍ବନ କରି ଅତ୍ୟାଚାରୀର ତୀବ୍ର ପ୍ରତିବାଦ କରନ୍ତି । ସମପାଠୀର ରୋଗଶଯ୍ୟାର ଶିରୋଦେଶରେ ଉପବିଷ୍ଟ ହୋଇ କ୍ଷୁଦ୍ର ବାଳକ ତାହା ନିମନ୍ତେ ବ୍ୟାକୁଳତା ପ୍ରକାଶ କରେ । ବୀରତ୍ୱ ଓ ସାହସର କାହାଣୀ ଶ୍ରବଣ କରି କରି ଶିଶୁଗଣର ମୁଖଶ୍ରୀ ଉତ୍ସାହରେ ଉଦ୍ଦୀପ୍ତ ହୋଇ ଉଠେ ଏବଂ ସାଧୁ କାର୍ଯ୍ୟର ଜୟ ଓ ପୁରସ୍କାର, ଅସାଧୁ ଆଚରଣର ପରାଜୟ-ବୃତ୍ତାନ୍ତ ଶ୍ରବଣକରି ସେମାନେ ପରମ

ସନ୍ତୋଷ ପ୍ରକାଶ କରନ୍ତି । ଏହି ସକଳ ଘଟଣା ଦ୍ୱାରା ଶିଶୁର ସ୍ୱଭାବ-ଜାତ ନୈତିକ ଓ ସାମାଜିକ ବୃତ୍ତିସ୍ଫୁରଣର ପ୍ରତ୍ୟକ୍ଷ ପରିଚୟ ମିଳେ ।

**୯- ଧର୍ମ୍ମବୃତ୍ତି**—ଶିଶୁର ଅନ୍ତରରେ ଯେଉଁ ପର୍ଯ୍ୟବେକ୍ଷଣଶକ୍ତି ନିହିତ ଅଛି ତଦ୍ୱାରା ପ୍ରଣୋଦିତ ହୋଇ ସେ ଜୀବନର ଉଷାକାଳରୁ ବସ୍ତୁ ଓ ଘଟଣା ସମୂହର ତଳେ ସର୍ବ ପ୍ରଥମ ତତ୍ତ୍ୱର ଅନ୍ୱେଷଣ କରେ । ଶିଶୁ ସ୍ୱୀୟ ଅଭ୍ୟନ୍ତରୀଣ କାର୍ଯ୍ୟ ପ୍ରବଣତାରୁ ପ୍ରତିଦିନ ଶିଶୁଜନୋଚିତ ଅସଂଖ୍ୟ କର୍ମ୍ମର ସୃଷ୍ଟି କରୁଥାଏ, ଏବଂ ସଙ୍ଗେ ୨ ନିଜକୁ ଏହିପରି ସମସ୍ତ କର୍ମ୍ମର ସ୍ରଷ୍ଟା ବୋଲି ଉପଲବ୍ଧି କରେ, ଅତଃପର ଯେତେବେଳେ ତାହାର ମନ କ୍ରମେ କ୍ରମେ ପ୍ରାକୃତିକ ଦୃଶ୍ୟ ଓ ଘଟଣାବଳୀ ଉପରେ ପ୍ରକ୍ଷିପ୍ତ ହୁଏ, ଏବଂ ବାହ୍ୟ ଜଗତର ବିଶାଳତା ତାହା ନିକଟରେ କ୍ରମେ କ୍ରମେ ପ୍ରକାଶିତ ହେଉଥାଏ, ସେତେବେଳେ ତାହାର ବିଶ୍ୱାସ ହୁଏ ଯେ ଏହି ପ୍ରକାଣ୍ଡ ପୃଥିବୀର ଅନ୍ତରାଳରେ ଜଣେ ଖୁବ୍ ପ୍ରକାଣ୍ଡ ବୁଦ୍ଧିମାନ ବ୍ୟକ୍ତି ଲୁକ୍କାୟିତ ରହି ଏହି ସକଳ ଦୃଶ୍ୟ ଘଟଣାବଳୀର ସୃଷ୍ଟି କରୁଅଛନ୍ତି ।

**୧୦ - ଐକ୍ୟ ଓ ସାମଞ୍ଜସ୍ୟତତ୍ତ୍ୱ** -ତତ୍ତ୍ୱଦର୍ଶୀ ଫ୍ଲୋବେଲ ଏହି ବିଶାଳ ବିଶ୍ୱର ଯାବତୀୟ ପଦାର୍ଥ ମଧ୍ୟରେ ଅନନ୍ତ ନିଗୂଢ଼ ଶକ୍ତି ଏବଂ ସୃଷ୍ଟିକାର୍ଯ୍ୟ ମଧ୍ୟରେ ଗୋଟିଏ ଅଟଳ ନିୟମ ଦର୍ଶନ କରିଥିଲେ । ଫ୍ଲୋବେଲ୍ ଦେଖାଇ ଅଛନ୍ତି ଯେ ମାନବର ଶାରୀରିକ, ମାନସିକ, ନୈତିକ, ଆଧ୍ୟାତ୍ମିକ ବୃତ୍ତି ନିଚୟ ମଧ୍ୟରେ ଐକ୍ୟ ଓ ସାମଞ୍ଜସ୍ୟ

ଅଛୁ । ମାନବର ଶୈଶବ, କୈଶୋର, ଯୌବନ ଓ ପ୍ରୌଢ଼ାବସ୍ଥା ମଧ୍ୟରେ ଐକ୍ୟ ଓ ସାମଞ୍ଜସ୍ୟ ଅଛୁ, ବୁଦ୍ଧି ଚର୍ଚ୍ଚା ହୃଦୟ ବୃତ୍ତି ଓ କାର୍ଯ୍ୟ କାରୀ ଶକ୍ତି ମଧ୍ୟରେ ଐକ୍ୟ ସାମଞ୍ଜସ୍ୟ ଅଛୁ। କଳିକା ଯେପରି ପୁଷ୍ପ ଓ ପୁଷ୍ପ ଫଳରେ ପରିଣତ ହୁଏ ସେପରି ଶୈଶବ, କୈଶୋର, ଯୌବନ ଓ ପ୍ରୌଢ଼ାବସ୍ଥା ଯଥାକ୍ରମେ ଗୋଟିଏ ଅନ୍ୟ ଗୋଟିକର ପରିଣତି ମାତ୍ର । ଫ୍ରୋବେଲ୍ ଅନ୍ତର୍ଜ୍ଜଗତ ସହିତ ବାହ୍ୟ ଜଗତର ଅପରିହାର୍ଯ୍ୟ ଐକ୍ୟ ବନ୍ଧନ ଏବଂ ବିଭିନ୍ନ ବିଦ୍ୟା ଓ ଶାସ୍ତ୍ର ସମୂହ ମଧ୍ୟରେ ଏକ ଅଚ୍ଛେଦ୍ୟ ନିଗୂଢ଼ ଯୋଗ ପ୍ରଦର୍ଶନ କରିଅଛନ୍ତି । ତାହାଙ୍କ ମତରେ ସାହିତ୍ୟ ଗଣିତରେ, ଦର୍ଶନ ଓ ବିଜ୍ଞାନରେ, ଶିଳ୍ପ ଓ ବାଣିଜ୍ୟରେ, କାବ୍ୟ ଓ ଅର୍ଥ ନୀତିରେ, ସମାଜ ବିଜ୍ଞାନ ଓ ଧର୍ମ୍ମ ଶାସ୍ତ୍ରରେ କୌଣସି ବିରୋଧ ନାହିଁ । ଏନିମନ୍ତେ ସେ ଶିଶୁର ଶିକ୍ଷା ନିମନ୍ତେ ଏପରି ଗୋଟିଏ ସର୍ବାଙ୍ଗ ସୁନ୍ଦର ପ୍ରଣାଳୀ ସୃଷ୍ଟି କରି ଅଛନ୍ତି । ଯହିଁ ମଧ୍ୟରେ ଶିଳ୍ପ ଓ ଶ୍ରମିକ ଶିକ୍ଷା ଏବଂ ସାହିତ୍ୟ, କାବ୍ୟ, ଗଣିତ, ଇତିହାସ, ସଙ୍ଗୀତ, ଚିତ୍ରବିଦ୍ୟା ପ୍ରଭୃତି ସାମଞ୍ଜସ୍ୟ ହୋଇ ଅଛୁ । ଫ୍ରୋବେଲ୍ ମାନବର ଜ୍ଞାନ, ଭକ୍ତି ଓ କର୍ମ୍ମ ମଧ୍ୟରେ ଅପରିହାର୍ଯ୍ୟ ଐକ୍ୟ ଏବଂ ସାମଞ୍ଜସ୍ୟ ପ୍ରଦର୍ଶନ କରି ଅଛନ୍ତି, ଏ ନିମନ୍ତେ ସେ ସ୍ୱପ୍ରବର୍ତ୍ତିତ ଶିଶୁ-ଶିକ୍ଷା ପ୍ରଣାଳୀଟି ଏପରି ନିର୍ମ୍ମାଣ କରିଅଛନ୍ତି ଯେ, ତଦ୍ୱାରା ଶିଶୁଗଣର ଏକାଧାରେ ବୁଦ୍ଧିର ପ୍ରାଖର୍ଯ୍ୟ ହୃଦୟ ବୃତ୍ତିର ଉନ୍ମେଷ ଓ କାର୍ଯ୍ୟକାରୀ ଶକ୍ତିର ସମ୍ୟକ ସ୍ଫୂର୍ତ୍ତି ଲାଭ ହୁଏ । ମନୋବିଜ୍ଞାନର ଏହି ମୂଳ ସୂତ୍ର ଗୁଡିକ ଉପରେ

ଶିଶୁ ପ୍ରକୃତିର ଏହି ମୂଳ ତତ୍ତ୍ୱ ସମୂହର ଉପରେ ପ୍ରକୃତି ଓ ମାନବର ଏହି ଅନ୍ତରଙ୍ଗ ସମ୍ବନ୍ଧ ଉପରେ ଫ୍ଲୋବେଲ୍ ତାହାଙ୍କର ସମଗ୍ର ଶିକ୍ଷା ପ୍ରଣାଳୀଟିର ପ୍ରତିଷ୍ଠା କରିଅଛନ୍ତି । ଫ୍ଲୋବେଲ୍ ଦେଖି ଥିଲେ ଯେ ପର୍ଯ୍ୟବେକ୍ଷଣ ଓ ପରୀକ୍ଷା ସହିତ ସଂଯୁକ୍ତ ନହେଲେ କୌଣସି ପ୍ରକାର ଜ୍ଞାନ ପ୍ରତ୍ୟକ୍ଷ ହୋଇ ନପାରେ, ପରୋକ୍ଷରେ ରହିଯାଏ । ଏ କାରଣ ଫ୍ଲୋବେଲଙ୍କର ଶିକ୍ଷା ପ୍ରଣାଳୀ ସମ୍ପୂର୍ଣ୍ଣ କାର୍ଯ୍ୟଗତ । ଶିଶୁମାନେ ନିଜେ ୨ ଶିକ୍ଷା କରିବେ, ନିଜେ ୨ ପର୍ଯ୍ୟବେକ୍ଷଣ ଓ ପରୀକ୍ଷା କରିବେ, କର୍ମ୍ମ ଶିକ୍ଷା କରିବେ ଏବଂ ସେ କେବଳ ପରିଦର୍ଶକ ରୂପେ ପ୍ରୀତି ସହିତ ସେମାନଙ୍କୁ ଚାଳନା କରିବେ, ସେମାନଙ୍କୁ ସୂତ୍ର ଧରାଇ ଦେବେ, ସେମାନଙ୍କର ତ୍ରୁଟି ସଂଶୋଧନ କରିଦେବେ, ଏହା ତାହାଙ୍କର ଶିକ୍ଷା ରୀତିଥିଲା । ଫ୍ଲୋବେଲ୍ ଶିଶୁ ମାନଙ୍କ ଜନ୍ମନ୍ତ୍ରେ ବୃତ୍ତିର ସ୍ୱତନ୍ତ୍ର ଅନୁଶୀଳନ ପୁନଶ୍ଚ ସବୁ ଗୁଡ଼ିକର ଏକ ଯୋଗେ ଅନୁଶୀଳନ ଦ୍ୱାରା ସେହି ଆଦର୍ଶକୁ କାର୍ଯ୍ୟରେ ପରିଣତ କରୁଥିଲେ । ସେ କାର୍ଯ୍ୟଗତ ଶିକ୍ଷା ଦ୍ୱାରା ବୃତ୍ତି ସକଳର ବିକାଶ ସାଧନ ଏବଂ ସେ ସମସ୍ତର ସାମଞ୍ଜସ୍ୟ ବିଧାନ କରୁଥିଲେ । କୌଣସି ୨ ବିଷୟ ମଧ୍ୟରେ ଫ୍ଲୋବେଲ୍ ଶିଶୁ ଗଣଙ୍କୁ ଶିକ୍ଷାଦାନ କରୁଥିଲେ, ବର୍ତ୍ତମାନ ତାହା ଉଲ୍ଲେଖ କରା ଯାଉଅଛି ।

୧ – କ୍ରୀଡ଼ା — ଫ୍ଲୋବେଲ୍ ଶିଶୁର କ୍ରୀଡ଼ା ପ୍ରବଣତାକୁ ଐଶ୍ୱରୀକ ଶକ୍ତି ବୋଲି ବିଶ୍ୱାସ କରୁଥିଲେ । ଫ୍ଲୋବେଲ କ୍ରୀଡାକୁ ତିନ ପ୍ରକାରେ ଦର୍ଶନ କରୁଥିଲେ, (କ) ଶିଶୁଗଣର ଶାରୀରିକ ସ୍ୱାସ୍ଥ୍ୟ

୬ ବଲବିଧାନରେ କ୍ରୀଡାର ଉପକାରିତା, ( ଖ ) ଶିଶୁମାନଙ୍କର ମାନସିକ ବୃତ୍ତି ସମୂହର ଅନୁଶୀଳନରେ କ୍ରୀଡାର ଉପକାରିତା, ( ଗ ) ଶିଶୁମାନଙ୍କର ନୈତିକ ଶିକ୍ଷା ଦ୍ୱାରା କ୍ରୀଡାର ଉପକାରିତା, ସଜୀବ ସତେଜ କ୍ରୀଡା ଦ୍ୱାରା ଶିଶୁମାନଙ୍କର ଦୈହିକ ମାଂସପେଶୀ ସମୂହ ସ୍ୱାଭାବିକ ଭାବେ ପରିଚାଳିତ ହୁଏ ଏବଂ ପ୍ରତି ଅବୟବରେ ବଳର ସଞ୍ଚାର ହୋଇଥାଏ । କ୍ରୀଡା ଶରୀରର ଆଭ୍ୟନ୍ତରୀଣ ଯନ୍ତ୍ର ଗୁଡିକୁ ସ୍ୱାଭାବିକ ଭାବେ ଉତ୍ତେଜିତ କରେ, ଶ୍ୱାସ କ୍ରିୟା, ରକ୍ତ ସଞ୍ଚାଳନ କ୍ରିୟା ପରିପାକ କ୍ରିୟାର ସ୍ୱଚ୍ଛନ୍ଦତା ସାଧନ କରେ, ଏବଂ ମସ୍ତିଷ୍କର ବିଭିନ୍ନ କେନ୍ଦ୍ରରେ ବଳସଞ୍ଚାର କରିଥାଏ । କ୍ରୀଡା ଦ୍ୱାରା ମନୋଯୋଗ, ପର୍ଯ୍ୟବେକ୍ଷଣ, ବିଚାର, ସ୍ମୃତି, କଳ୍ପନା ଏବଂ ଅନ୍ୟାନ୍ୟ ମନୋବୃତ୍ତିର ଅନୁଶୀଳନ ହୋଇଥାଏ । କ୍ରୀଡା ଦ୍ୱାରା ନୈତିକ ଓ ସାମାଜିକ ବୃତ୍ତି ସମୂହର ମଧ୍ୟ ବିକାଶ ସାଧନ ହୋଇଥାଏ । ଏବଂ କ୍ରୀଡା ଦ୍ୱାରା ଶିଶୁମାନଙ୍କର ପ୍ରଥମ ନ୍ୟାଯ୍ୟାନ୍ୟାଯ୍ୟ ବୋଧ ଜନ୍ମିଥାଏ । କ୍ରୀଡା ଦ୍ୱାରା ସେମାନେ ପରସ୍ପରର ବ୍ୟବହାର ସମାଲୋଚନା କରିବାକୁ ଶିଖନ୍ତି, ସତ୍ୟାସତ୍ୟ ନ୍ୟାଯ୍ୟାନ୍ୟାଯ୍ୟ ସମ୍ବନ୍ଧରେ ବାଦ ପ୍ରତିବାଦ କରନ୍ତି, ସତ୍ୟ ଓ ନ୍ୟାଯ୍ୟର ପକ୍ଷ ସମର୍ଥନ ଏବଂ ଅସତ୍ୟ ଓ ଅନ୍ୟାଯ୍ୟର ତୀବ୍ର ପ୍ରତିବାଦ କରନ୍ତି । ତଦ୍ୱାରା ସେମାନଙ୍କର ନୈତିକ ବିଚାର ଶକ୍ତିର ଅନୁଶୀଳନ ହୁଏ, ନୀତିଜ୍ଞାନ ପରିସ୍ଫୁଟ ହୁଏ, ସହାନୁଭୂତି ଓ ପ୍ରୀତି ସାହସ ଓ

ଉପଯୋଗୀତା ଜାଗରିତ ହୁଏ । କ୍ରୀଡ଼ା ସମ୍ବନ୍ଧ ଫ୍ରିଲ ମଧ୍ୟ କିଣ୍ଡାର ଗାର୍ଡେନ ମଧ୍ୟରେ ସ୍ଥାନ ପ୍ରାପ୍ତ ହୋଇ-ଅଛୁ । ବିଦ୍ୟାଳୟର ଶିକ୍ଷା କାର୍ଯ୍ୟରେ ଶୃଙ୍ଖଳା ଓ ଶାସନ, ଶିଶୁମାନଙ୍କର ସମବେତ ବଶ୍ୟତା ଓ ଶାରୀ-ରିକ ବ୍ୟାୟାମ ଶିକ୍ଷା ଏବଂ ସେମାନଙ୍କର ସାମାଜିକ ବୃତ୍ତି ସ୍ଫୁରଣ ପକ୍ଷେ ଫ୍ରିଲ ଅତ୍ୟନ୍ତ ଉପଯୋଗୀ ।

## ୨ — ଶିଶୁ ଶିକ୍ଷାର ଖେଳଣା —

ଫ୍ରୋବେଲ ସାହେବ ଶିଶୁମାନଙ୍କର ଖେଳଣା ପ୍ରିୟ-ତାର ସୁଯୋଗ ପାଇଁ ସେମାନଙ୍କୁ ଖେଳଣା ଛଳରେ ଶିକ୍ଷା ଦେବା ନିମନ୍ତେ କେତେଗୁଡ଼ିଏ ସୁନ୍ଦର ଖେଳଣା ପ୍ରସ୍ତୁତ କରୁଥିଲେ । ସେ ବହୁ ବିବେଚନା ପୂର୍ବକ ମନୋ ବିଜ୍ଞାନର ମୂଳ ସୂତ୍ରାନୁସାରେ ଜଡ଼ ବିଜ୍ଞାନ ଓ ଗଣିତର ମୌଳିକ ନିୟମାନୁସାରେ ସେ-ସମସ୍ତ ନିର୍ମାଣ କରିଥିଲେ । ଶିଶୁମାନେ ଏହି ଗୁଡ଼ିକ ନେଇ ଖେଳି ଖେଳି ଅତ୍ୟନ୍ତ ଆମୋଦ ପ୍ରାପ୍ତ ହୁଅନ୍ତି ଏବଂ ଅଜ୍ଞାତ ସାରରେ ସହଜରେ ଗଣିତ, ଜ୍ୟାମିତି ଓ ବିଜ୍ଞାନର ମୂଳତତ୍ତ୍ୱ ଗୁଡ଼ିକ ଶିଖନ୍ତି । ଏହି ଖେଳଣା ସମସ୍ତ ଦ୍ୱାରା ସେମାନଙ୍କର ଚକ୍ଷୁ, କର୍ଣ୍ଣ, ତ୍ୱକ, ପ୍ରଭୃତି ଇନ୍ଦ୍ରିୟ ନିଚୟର ଅନୁଶୀଳନ ହୁଏ । ମନୋଯୋଗ ଗାଢ଼ତା ପ୍ରାପ୍ତ ହୁଏ, ଚିନ୍ତାର ଶକ୍ତି ପ୍ରଖର ହୁଏ ଏବଂ ସେମାନଙ୍କର ବୁଦ୍ଧିକୁ ବିଜ୍ଞାନ ଶିକ୍ଷାର ଉପଯୋଗୀ କରେ ।

## ୩—ଶିଶୁ ବିଦ୍ୟାଳୟର କାର୍ଯ୍ୟାବଳୀ -

ଫ୍ରୋବେଲ ସାହେବ ସ୍ୱପ୍ରବର୍ତ୍ତିତ ଶିକ୍ଷା ପ୍ରଣାଳୀ

ମଧ୍ୟରେ ଏପରି କେତେ ଗୋଟିଏ ଶିଶୁଜନ ସୁଲଭ କାର୍ଯ୍ୟର ଅବତାରଣା କରିଅଛନ୍ତି, ଯାହା ପ୍ରାପ୍ତ-ହେଲେ ଶିଶୁ ମାନଙ୍କର ଆନନ୍ଦର ସୀମା ରହେନାହିଁ । ସେ ଗୁଡ଼ିକ ଯଥା:– Stick laying ବା ଶଲାକା ସ୍ଥାପନ Ring laying ବା ବୃତ୍ତି ସ୍ଥାପନ Tablet laying ବା ଫଳକ ସ୍ଥାପନ Peas–Work ବା ବୀଜ ସଂସ୍ଥାପନ Paper Cutting ବା କାଗଜ କର୍ତ୍ତନ Paper folding ବା କାଗଜ ଭଙ୍ଗି କରଣ Mat weaving ବା ଶୀତଳ ପଟୀ ବୟନ per forating ବା କାଗଜ ଛିଦ୍ର କରଣ, Clay modelling ବା ମୃଣ୍ମୟ ଗଠନ ଇତ୍ୟାଦି ।

ଏହି ଶିଶୁ ଜନ ସୁଲଭ କାର୍ଯ୍ୟାବଳୀର ମଧ୍ୟରେ ମାନବ ସମାଜର ଯାବତୀୟ ଶିଳ୍ପ କାର୍ଯ୍ୟର ମୌଳିକ ବୟନ ସକଳ ନିହିତ ରହିଅଛି, ଶିଶୁଗଣ ଏହି ଗୁଡ଼ିକରେ ନିପୁଣତା ଲାଭ କଲେ ଭବିଷ୍ୟତ୍ ଜୀବନରେ ଯେ କୌଣସି ଶିଳ୍ପ ମଧ୍ୟରେ ସହଜେ ପ୍ରବେଶ ଏବଂ ବିଚକ୍ଷଣତାର ସହିତ ତାହାର ଉନ୍ନତି ସାଧନ କରି ପାରିବେ ।

**୪—ଅଙ୍କନ ଓ ଚିତ୍ର ଶିକ୍ଷା** — ଫ୍ରୋବେଲ ସାହେବ ଶିଶୁ ପ୍ରକୃତିର ମଧ୍ୟରେ ଅଙ୍କନ ଚେଷ୍ଟାର ସ୍ଫୁରଣ ଦର୍ଶନକରି ତାହାକୁ ପ୍ରକୃତ ପଥରେ ପରିଚାଳିତ କରିବା ନିମନ୍ତେ କିଣ୍ଡାରଗାର୍ଟେନ ପ୍ରଣାଳୀ ମଧ୍ୟରେ ଅଙ୍କନ ଓ ଚିତ୍ରଶିକ୍ଷାର ଯଥୋଚିତ ବ୍ୟବସ୍ଥା କରିଅଛନ୍ତି । ଫ୍ରୋବେଲ୍ଙ୍କର ମତ ଏହିଯେ ଶିଶୁ-

ମାନଙ୍କୁ ଅତି ସହଜ ସରଳ ରେଖାପାତରୁ ଆରମ୍ଭ କରି ଉତ୍ତରୋତ୍ତର ଜଟିଳ ଅଙ୍କନରେ ଉପନୀତ କରିବାକୁ ହେବ । ଶିଶୁମାନେ ପ୍ରଥମତଃ ରେଖା ଗାରେଇବା ଆରମ୍ଭ କରି କ୍ରମେ ଯେଉଁ ପରିମାଣରେ ସେମାନଙ୍କର କ୍ଷୁଦ୍ର ହସ୍ତଲିପି ଶିକ୍ଷିତ ଓ ନିୟମିତ ହେବ, ଏବଂ ମନୋବୃତ୍ତିର ବିକାଶ ହେଉଥିବ, ସେହି ପରିମାଣରେ ସେମାନେ ସ୍ୱଚେଷ୍ଟା ଓ ସ୍ୱାବଲମ୍ବନ ଦ୍ୱାରା ସ୍ୱାଧୀନ ପର୍ଯ୍ୟବେକ୍ଷଣ ଓ ବିଚାର କରି ମୁକ୍ତ ହସ୍ତରେ ଅଙ୍କନ ଅଭ୍ୟାସ କରିବେ, ଅଙ୍କନ ଶିକ୍ଷା ଦ୍ୱାରା ଶିଶୁମାନଙ୍କ ଦର୍ଶନ ଶକ୍ତିର ଅନୁଶୀଳନ ହୁଏ, ପର୍ଯ୍ୟବେକ୍ଷଣ ଶକ୍ତି ବିକାଶ ଲାଭ କରେ, ଚିତ୍ତର ସମାଧାନ ସତ୍ୟଚିନ୍ତା ଓ ସତ୍ୟ କଥନର ଅଭ୍ୟାସ ହୁଏ ଏବଂ ନୀରବ କର୍ମ୍ମନିଷ୍ଠାର ସାଧନ ହୋଇଥାଏ, ଅଙ୍କନ ଶିକ୍ଷାର ଉତ୍କର୍ଷ ସଙ୍ଗେ ୨ ଶିଶୁମାନଙ୍କ ହସ୍ତଲିପିର ମଧ୍ୟ ଉତ୍କର୍ଷ ସାଧିତ ହୋଇଥାଏ ।

**୪ — ପଦାର୍ଥ ପାଠ ପ୍ରକୃତି ପାଠ ଓ ବୈଜ୍ଞାନିକ ପାଠ —** ପଦାର୍ଥ ଶିକ୍ଷା ଆରମ୍ଭ କରି ପ୍ରଥମତଃ ଶିଶୁମାନେ ପଦାର୍ଥ ନିଚୟର ବିବିଧ ଆକାର ଓ ବର୍ଣ୍ଣ ବିଷୟରେ ଶିକ୍ଷାଲାଭ କରନ୍ତି । ବସ୍ତୁ ତତ୍ତ୍ୱର ସାଧାରଣ ଜ୍ଞାନ ହେବାପରେ ସେମାନଙ୍କୁ ସହଜ ବୈଜ୍ଞାନିକ ପାଠ ପ୍ରଦତ୍ତ ହୋଇଥାଏ । ଶିଶୁମାନଙ୍କର ବୟଃକ୍ରମ ଓ ବୁଦ୍ଧିର ବିକାଶାନୁସାରେ

ଶ୍ରେଣୀ ବିଭାଗ କରି ସେମାନଙ୍କୁ ସୋପାନ ପରମ୍ପରାରେ ଉଦ୍ଭିଦ ବିଦ୍ୟା, ପଦାର୍ଥ ବିଦ୍ୟା, ରସାୟନ, ସ୍ୱାସ୍ଥ୍ୟ ବିଜ୍ଞାନ, ଗାର୍ହସ୍ଥ୍ୟ ନୀତି ପ୍ରଭୃତିର ସ୍ଥୂଳ ୨ ତତ୍ତ୍ୱ ଶିକ୍ଷା ଦିଆ ହୋଇଥାଏ । ନାନାବିଧ କ୍ରୀଡା ସାମଗ୍ରୀ, ଚିତ୍ରପଟ ମୃଣ୍ମୟମୂର୍ତ୍ତି ଓ ଅନ୍ୟାନ୍ୟ ବିବିଧ ଉପକରଣ ଅବଲମ୍ବନରେ ଏବଂ ଜୀବ ନିବାସ, ବୃକ୍ଷ ବାଟିକା ପ୍ରଭୃତି ସ୍ଥାନକୁ ସେମାନଙ୍କୁ ନେଇଯାଇ ଶିଶୁଜନ ବୋଧଗମ୍ୟ ସହଜ ଭାଷାରେ ପ୍ରତ୍ୟକ୍ଷ ପ୍ରଣାଳୀରେ ପ୍ରାଗୁକ୍ତ ବୈଜ୍ଞାନିକ ଶିକ୍ଷା ପ୍ରଦତ୍ତ ହୋଇଥାଏ ।

୬ — ନାଟ୍ୟ ଓ ସଙ୍ଗୀତ — ପଦାର୍ଥ ତତ୍ତ୍ୱବା ବୈଜ୍ଞାନିକ ପାଠ ଶିକ୍ଷା ହେଲେ ଶିଶୁମାନେ ଭଙ୍ଗୀ ଓ ସଙ୍ଗୀତ ସହକାରେ ଖେଳା ଦ୍ୱାରା ତହିଁର ଅଭିନୟ କରିଥାନ୍ତି, ଟଙ୍କାଶାଳା, ମୁଦ୍ରାଯନ୍ତ୍ର, କାଗଜ ପ୍ରସ୍ତୁତର ଯନ୍ତ୍ର, ଦୀପଶଲାକାର ଯନ୍ତ୍ର, ବସ୍ତ୍ରବୟନ ଯନ୍ତ୍ର, କାଚପାତ୍ର ନିର୍ମ୍ମାଣାଗାର ପ୍ରଭୃତି ଦର୍ଶନକରି ଆସି ଶିଶୁମାନେ ବିଦ୍ୟାଳୟରେ ଅଙ୍କନ ବିଦ୍ୟାସାହାଯ୍ୟରେ ସେ ସମୁଦାୟର ଆଲୋଚନା କରନ୍ତି, ଏବଂ ଅଭିନୟ ଓ ସଙ୍ଗୀତ ବର୍ଣ୍ଣନା ଦ୍ୱାରା ଏହି ସକଳ ତତ୍ତ୍ୱକୁ ସଜୀବ ଓ ମନୋହର କରନ୍ତି, ଏତଦ୍ଦ୍ୱାରା ବିବିଧ ବସ୍ତୁ ଓ ବିଷୟର, ତତ୍ତ୍ୱ ସେମାନଙ୍କର ମନରେ ଚିର ମୁଦ୍ରିତ ହୋଇଯାଏ ।

୭—ଶିଶୁମାନଙ୍କର କାହାଣୀ ଶ୍ରବଣ ଓ ତହିଁର ପୁନରାବୃତ୍ତି — ଶିଶୁମାନଙ୍କର ମନୋଯୋଗ ଅନୁଶୀଳନ ଓ ତତ୍ ସମାଧାନ ପକ୍ଷେ

ଗଳ୍ପ ଗୋଟିଏ ପ୍ରଧାନ ଉପାୟ । ଉଦ୍ଧ୍ୟଣୀର କାହାଣୀ ଶ୍ରବଣ କରୁ କରୁ ସ୍ମୃତି ଓ ଧାରଣା ଶକ୍ତି ଉନ୍ମେଷିତ ହୋଇଥାଏ , ଶିଶୁମାନଙ୍କ ମନୋଯୋଗ ମନୋହର ଗଳ୍ପ ମଧ୍ୟରେ ସ୍ୱତଃ ପ୍ରବିଷ୍ଟ ହୋଇଥାଏ । ଏବ କୌତୁହଳର ବଶବର୍ତ୍ତୀ ହୋଇ ସେମାନେ ପୂର୍ବାପର ଘଟଣାବଳୀ ମନେରଖି ଶିଖନ୍ତି , ଏଥିରୁ ପୁନରାବୃତ୍ତି ବାସନା ସେମାନଙ୍କ ମନୋ ମଧ୍ୟରେ ଉଦିତ ହୋଇ- ଥାଏ , ଅବଶେଷରେ କାହାଣୀ-ଶ୍ରବଣ ଓ ତହିଁର ପୁନରାବୃତ୍ତିରେ ଏତାଦୃଶ ଅଭ୍ୟସ୍ତ ହୁଅନ୍ତି ଯେ ତନ୍ମଧ୍ୟରେ ଗୋଟିଏ ମାତ୍ର ଘଟଣା ବିସ୍ମୃତ ନହୋଇ ଅବଲୀଳା କ୍ରମେ ପୁନରାବୃତ୍ତି କରିପାରନ୍ତି । ଏଥିରେ ମନୋଯୋଗର ଏତାଦୃଶ ସାଧନା ହୁଏ ଯେ ଅନ୍ୟ ସମୟରେ ଶିଶୁ ଯେତେବେଳେ ପାଠ କଲେ ବା- ଲେଖେ ତେତେବେଳେ ତଦ୍ଗତ ଚିତ୍ତରେ ତାହା- କରେ , ଅନ୍ୟ କଣ୍ଟକରେ ନାହିଁ , ପୁନରାବୃତ୍ତିର ଅଭ୍ୟାସ ଦ୍ୱାରା ଶିଶୁ ମାନଙ୍କର ମନୋଭାବ ପ୍ରକାଶର କ୍ଷମତା ବଢ଼େ । ଗଳ୍ପ କଥାର ନୈତିକ ଉପ- କାରିତା ଯେ କେତେଦୂର ତାହାକର ଶେଷ କରା- ଯାଇ ନପାରେ ।

## ୮ - ଲେଖାପଢ଼ା ଓ ଗଣିତ ଶିକ୍ଷା —

କିଣ୍ଡାର ଗାର୍ଟେନ ବିଦ୍ୟାଳୟରେ ଲେଖାପଢ଼ା ଓ ଗଣିତ ଶିକ୍ଷାର ପ୍ରଣାଳୀ ସମ୍ପୂର୍ଣ୍ଣରୂପେ ମନୋବିଜ୍ଞା- ନର ନିୟମାବଳୀର ଉପର ପ୍ରତିଷ୍ଠିତ ଏହି ପ୍ରଣାଳୀର ଶିକ୍ଷା ଶିଶୁମାନଙ୍କ ପକ୍ଷରେ ଅତିଶୟ ମନୋରମ

ସେମାନଙ୍କର ଶାରୀରିକ ଓ ମାନସିକ କୋମଳ ପ୍ରକୃତିର ସମ୍ପୂର୍ଣ୍ଣ ଅନୁକୂଳ ।

**୯ - ନୈତିକ ଓ ସାମାଜିକ ଶିକ୍ଷା—** ଫ୍ରୋବେଲ ଅନ୍ୟାନ୍ୟ ବିଷୟପରି କାର୍ଯ୍ୟ ଦ୍ୱାରା ଶିଶୁମାନଙ୍କୁ ନୀତି ଶିକ୍ଷା ଦେଉଥିଲେ । ଶିଶୁମାନଙ୍କ ଚରିତ୍ର ଗଠନ କରିବା ସମ୍ପୂର୍ଣ୍ଣରୂପେ ଶିକ୍ଷକ ଉପରେ ନିର୍ଭର କରେ । ଏବିଷୟ ବିଦ୍ୟାଳୟରେ ଏପରି ଗୋଟିଏ ପାଣି ପବନ ସଞ୍ଚାରକରି ରଖିବା ପ୍ରୟୋଜନ ଯହିଁ ମଧ୍ୟରେ ଆସିଲେ ଶିଶୁମାନେ ନିଜେ ନିଜେ ସଦ୍‌ବ୍ୟବହାର ଓ ଶିଷ୍ଟାଚାରରେ ଅଭ୍ୟସ୍ତ ହେଉଥିବେ, ଶିକ୍ଷକଙ୍କର ଅକପଟ ସ୍ନେହ ଓ ସହାନୁଭୂତି ତାଙ୍କର ମଧୁର ବ୍ୟବହାର ଶିଶୁ ମାନଙ୍କର ହୃଦୟ ଜୟକରି ସଦନୁଷ୍ଠାନରେ ପ୍ରବୃତ୍ତ କରେ ବା ଅସଦନୁଷ୍ଠାନରୁ ନିବୃତ୍ତ ରଖେ । ସୌନ୍ଦର୍ଯ୍ୟ ବୃତ୍ତିର ଅନୁଶୀଳନ ନୀତି ଶିକ୍ଷାର ଗୋଟିଏ ପ୍ରକୃଷ୍ଟ ଉପାୟ । ଏନିମନ୍ତେ ଫ୍ରୋବେଲ ଶିଶୁ ମାନଙ୍କୁ ନେଇ ନଦୀତୀରରେ, ପ୍ରାନ୍ତରରେ, ଉପବନରେ, ନିକୁଞ୍ଜରେ, ପର୍ବତରେ, ଉପତ୍ୟକାରେ ଭ୍ରମଣ ପୂର୍ବକ ପ୍ରାକୃତିକ ଦୃଶ୍ୟ ଦର୍ଶନ ଓ ତନ୍ନିମିତ୍ତ ଆନନ୍ଦ-ସମ୍ଭୋଗ ଦ୍ୱାରା ସେମାନଙ୍କର ସୌନ୍ଦର୍ଯ୍ୟ ବୃତ୍ତିର ଉତ୍କର୍ଷ ସାଧନ କରୁଥିଲେ । କିଣ୍ଡାର ଗାର୍ଟେନର ନୀତିଶିକ୍ଷା ପ୍ରଣାଳୀ ମଧ୍ୟ ପ୍ରତ୍ୟକ୍ଷ ଜ୍ଞାନ ଉପରେ ପ୍ରତିଷ୍ଠିତ ଏନିମନ୍ତେ କିଣ୍ଡାର ଗାର୍ଟେନ ବିଦ୍ୟାଳୟର ଶିଶୁ ମାନଙ୍କୁ ଅନାଥାଶ୍ରମ, କୁଷ୍ଠାଶ୍ରମ, ପୀଡ଼ିତାଶ୍ରମ ଏବ ସାଧା-

ରଣ ସେବାଳୟ ସମୂହ ପ୍ରଦର୍ଶନ ନାନାବିଧ ପୁଣ୍ୟ କାହାଣୀର ଉଦ୍ଦୀପନା ପୂର୍ଣ୍ଣ ବର୍ଣ୍ଣନ ଏବଂ ଅନ୍ଧ, ଅତୁର ରୋଗୀ, ଅନାଥ, କାଙ୍ଗାଳୀ, ଗରିବ ମାନଙ୍କର ସାହାଯ୍ୟାର୍ଥ ଫୁଲ, ଫଳ ଆହାର୍ଯ୍ୟ ବସ୍ତୁ, ଅର୍ଥ ପ୍ରଭୃତି ସାଧ୍ୟମତ ସଂଗ୍ରହ କରିବା ନିମନ୍ତେ ଉତ୍ସାହ ପ୍ରଦାନଦ୍ୱାରା ସେମାନଙ୍କର ଅନ୍ତରର ନୈତିକ ବୃତ୍ତି ସମୂହ ସ୍ଫୁରିତ କରି ଦିଆଯାଏ ।

୧୦ - ଧର୍ମ୍ମଶିକ୍ଷା — କିପରି ଶିଶୁର ମନରେ ଧର୍ମ୍ମଭାବର ଉଦୟ ହୁଏ ଧର୍ମ୍ମପିପାସା ଜାଗ୍ରତ ହୋଇଉଠେ, ତଦ୍ବିଷୟରେ ମଧ୍ୟ କିଣ୍ଡାର ଗାର୍ଟେନ ପ୍ରବର୍ତ୍ତକଙ୍କର ବିଶେଷ ମତ ଓ କାର୍ଯ୍ୟ ଅଛି, ତାହା ସନାତନ ଓ ସାର୍ବଭୌମିକ, ଏ ବିଷୟଟି ମଧ୍ୟ ଶିକ୍ଷକଙ୍କର ଉପରେ ନିର୍ଭର କରେ । ଭଗବଦ୍‌ଭକ୍ତିର ଅନୁଶୀଳନ କରିବା-ପ୍ରତ୍ୟେକ ଶିକ୍ଷକଙ୍କର କର୍ତ୍ତବ୍ୟ ।

## ଉପସଂହାର ।

କିଣ୍ଡାର ଗାର୍ଟେନ ପ୍ରଣାଳୀର ସଂକ୍ଷିପ୍ତ ମତ ଏହି ଯେ ଶିଶୁଉପରେ ଛପା ପୁସ୍ତକର ଭାରଦେବା ଉଚିତ ନୁହେ । ସେ ନିଜେ ଦେଖି ଶୁଣି ଉଲଟା ପାଲଟା କରି ବୁଝି ସୁଝି ଜଗତର ନାନା ବସ୍ତୁ ଓ ଘଟଣାର ଜ୍ଞାନଲାଭ କରିବ ଓ କର୍ମ୍ମ ମଧ୍ୟ ଦେଇ ଅନୁଷ୍ଠାନର ମଧ୍ୟଦେଇ ନୀତି ଓ ଚରିତ୍ର ଲାଭକରିବ । ଛୋଟ ଶିଶୁସନ୍ତାନଙ୍କୁ ଭୂଗୋଳ, ଇତିହାସ ଓ ବ୍ୟାକରଣ ପୁସ୍ତକ କଣ୍ଠସ୍ଥ କରାଇବ ନାହିଁ । କିନ୍ତୁ ସେମାନଙ୍କୁ ଗଳ୍ପ କହ, ସଂକ୍ଷେପ୍ତ ନୀତିବାକ୍ୟ ଶିଖାଅ, ଗାନ ଗାଇବାକୁ ଓ ଅଙ୍ଗଚାଳନା କରି-

ବାକୁ ଶିଖାଅ , ଧୂଳି ବାଲିକୁ ଅନେକଇ ଖେଳା କରିବାକୁ ଦଅ , ଚିତ୍ର ଅଙ୍କନ କରିବାକୁ ଓ ଶିଳ୍ପ କର୍ମ୍ମ କରିବାକୁ ଶିଖାଅ , ବଗିଚା କରିବାକୁ ଓ ପଶୁ ପକ୍ଷୀ ପୋଷିବାକୁ ଶିଖାଅ । ଆଉ ଏସବୁ ସକଳର ସହିତ ସଂଯୁକ୍ତ କରି ସେମାନଙ୍କର ବୟସ ଓ କ୍ଷମତାନୁସାରେ ଅତିସହଜ ଓ ଆନନ୍ଦମୟ ପ୍ରଣାଳୀରେ ସେମାନଙ୍କୁ ଲେଖାପଢା ଓ ଗଣିତ ଶିକ୍ଷାଦିଅ । କେତେଗୁଡାଏ ବୃଥାକଥା ମୁଖସ୍ଥ କରାଇ ସେମାନଙ୍କର ଆନନ୍ଦମୟ ଶିଶୁଜୀବନକୁ ନିରର୍ଥକ ନକର । ସେମାନଙ୍କୁ ଶାସନ କରିବାର ବା ଦଣ୍ଡଦେବାର କୌଣସି ପ୍ରୟୋଜନ ନାହିଁ । ଶାରୀରିକ ଦଣ୍ଡ ବା କଠୋର ଶାସନରେ ସେମାନଙ୍କର ଶାରୀରିକ , ମାନସିକ , ଓ ନୈତିକ ଅନିଷ୍ଟ ହୋଇଥାଏ । ଶିଶୁଜୀବନ ଅତିକୋମଳ ଅତିସୁନ୍ଦର ସ୍ନେହ ଓ ଆନନ୍ଦ ଭିତରର ଉପଯୋଗୀ ଶିଶୁ ଯେପରି ସ୍ନେହ ବୁଝେ ଏପରି ଆଉ କିଏ ବୁଝେ ସ୍ନେହକରି ଆନନ୍ଦ କରି ଶିଶୁକୁ ବଶକର । ତାହାକୁ ତିରସ୍କାର ବା ପ୍ରହାର କରିବନାହିଁ । କିଣ୍ଡାର ଗାର୍ଡେନ ପ୍ରଣାଳୀର ମତ ଏହି ଯେ ଶିଶୁ ମଧ୍ୟରେ ଯେଉଁ ସଜୀବ କର୍ମ୍ମଶୀଳତା ଖେଳା ଆକାରରେ ସର୍ବଦା ପ୍ରକାଶ ପାଉ ଅଛି ତାହାକୁ ସଙ୍କୁଚିତ କରିବନାହିଁ । କିନ୍ତୁ ସେ ଭାବ ବାହାର ହୋଇ ଆସିବାକୁ ଦଅ , ଭିତରେ ତାହାର ସ୍ଫୂର୍ତ୍ତି ଭିତରେ ତାହାର ସ୍ୱାସ୍ଥ୍ୟ ଓ ସୁଖ ଜୀବନ ଓ ମନୁଷ୍ୟତ୍ୱର ଶିକ୍ଷା , ସ୍ୱୟଂ ପ୍ରକୃତି ଦେବୀ , ସ୍ୱୟଂ ଭଗବାନ ପୁସ୍ତକ ଅପେକ୍ଷା ଭଲ ଭାବେ ତାହାକୁ ଯେପରି ଶିକ୍ଷାଦେଇ ଯାଉଅଛନ୍ତି ପିତା ମାତା ଓ ଶିକ୍ଷକ ତାହାକୁ

ସେହି ଶିକ୍ଷା ପଥରେ ସହାୟତା କରିବେ । ଅଳ୍ପ ବୟ-ସରେ ବାଳକ ବାଳିକା ମାନଙ୍କୁ ପଣ୍ଡିତର ସଂସାରୀ କରିବା କିଣ୍ଡାର ଗାର୍ଟେନ ଶିକ୍ଷାର ଉଦ୍ଦେଶ ନୁହେ । କିନ୍ତୁ ଯେତେଦିନ ପର୍ଯ୍ୟନ୍ତ ସେମାନେ ସ୍ୱାଭାବିକ ଭାବେ ବାଳକ ବାଳିକା ଥାଆନ୍ତି ତେତେଦିନ ସେମାନଙ୍କର ବାଲ୍ୟ ଭାବକୁ ଅକ୍ଷୁଣ୍ଣ ରଖି ପ୍ରକୃତିର ପ୍ରଣାଳୀରେ ସହ-ଜରେ ଶିକ୍ଷାଦେଇ ତାହାକୁ ପ୍ରସ୍ଫୁଟିତ କରିବା ଏହାର ଉଦ୍ଦେଶ , କିଣ୍ଡାର ଗାର୍ଟେନ ପ୍ରଣାଳୀ ପିତା ମାତା ଓ ଶିକ୍ଷକଙ୍କୁ କହେ ତୁମ୍ଭେମାନେ ବାଳକ ବାଳିକା ମାନଙ୍କୁ ଯେପରି ନରନାରୀ ହେବାକୁ ଚାହଁ ବାଲ୍ୟକାଳରେ ସେମାନଙ୍କ ନିକଟରେ ତାହା ଆଶାକର ନାହିଁ । କିନ୍ତୁ ସେମାନଙ୍କର ବାଲ୍ୟ ପ୍ରକୃତିର ଉପରେ ସେମାନଙ୍କର ସେହି ମନୁଷ୍ୟତ୍ୱ ଓ ନାରୀତ୍ୱର ସୂତ୍ର ପାତକର ଦେଖିବ ଯଥା ସମୟେ ସେମାନେ ସମ୍ପୂର୍ଣ୍ଣ ନରନାରୀ ପ୍ରକୃତି ନର ନାରୀ ହୋଇ ତୁମ୍ଭମାନଙ୍କର ଆନନ୍ଦ ବିଧାନ କରିବେ ।

କିଣ୍ଡାର ଗାର୍ଟେନ ଶିକ୍ଷା ପ୍ରଣାଳୀ ଆମ୍ଭମାନଙ୍କ ଦେଶରେ ଅଦ୍ୟାପି ଅଲୋଚିତ ହୋଉନାହିଁ କହିଲେ ଚଳେ ସୁତରାଂ ପ୍ରାଥମିକ ବିଦ୍ୟାଳୟର ଛାତ୍ରମାନଙ୍କ ଶିକ୍ଷାର ସୁବିଧା ପାଇଁ ଏହା ସଙ୍କଳନ କରାଯାଇ ସାଧାରଣରେ ପ୍ରକାଶିତ କରାଗଲା ।

———o———

# ପରିଶିଷ୍ଟ ।

## ଶିଶୁ ଶିକ୍ଷାର ସଙ୍କେତ ।

ଯେଉଁମାନେ ଶିକ୍ଷା ସମ୍ବନ୍ଧେ ଚିନ୍ତା କରନ୍ତି କିମ୍ବା ଦୀର୍ଘକାଳ ଶିକ୍ଷା ବିଭାଗରେ ରହି ବହୁଦର୍ଶୀ ଅଟନ୍ତି ସେମାନଙ୍କ ନିକଟରେ ଉତ୍କୃଷ୍ଟ ଶିକ୍ଷାଦାନ ପ୍ରଣାଳୀ ଅଜ୍ଞାତ ନୁହେଁ । ଶିକ୍ଷକର ଗୁଣରେ ବାଳକ ବାଳିକା ମାନଙ୍କର ମାନସିକ ସ୍ଫୂର୍ତ୍ତି ଓ ଉନ୍ନତି ହୋଇଥାଏ ଶିକ୍ଷକର ଦାୟିତ୍ୱ ଅନେକ । ହିନ୍ଦୁ ଶାସ୍ତ୍ରାନୁସାରେ ; ଶିକ୍ଷକ ଧର୍ମ୍ମପିତା ଯେଉଁମାନେ କେବଳ ଦଣ୍ଡବିଧାନ କରି ବାଳକ ବାଳିକା ମାନଙ୍କର ଶିକ୍ଷୋନ୍ନତିର ଆଶା କରନ୍ତି ସେମାନେ ଶିକ୍ଷକ ପଦ ବାଚ୍ୟ ନୁହନ୍ତି । ବାଳକ ବାଳିକା ମାନଙ୍କୁ ସ୍ଥିର, ଶାନ୍ତ, ପ୍ରଫୁଲ୍ଲ ଓ ଉତ୍ସାହ ବାକ୍ୟରେ ଶିକ୍ଷା ଦାନକଲେ ବିଦ୍ୟାଳୟ ପକ୍ଷେ ଆନନ୍ଦାଳୟରେ ପରିଣତ ହେବ ।

ନୂତନ ଶିକ୍ଷକ ମାନଙ୍କପକ୍ଷେ ଶିକ୍ଷାଦାନ ସମ୍ବନ୍ଧୀୟ କେତେକ ସଙ୍କେତ ଆବଶ୍ୟକ ମନେକରି ନିମ୍ନରେ ପ୍ରଦାନକ ଗଲା । ୧- ଶିକ୍ଷାଦାନର ମୁଖ୍ୟ ଉଦ୍ଦେଶ୍ୟ ୨- ବୁଦ୍ଧି ବୃତ୍ତିର ପରିଚାଳନା ଓ ବୁଝାଇ ଦେବାର ନିୟମ ୩- ଶିକ୍ଷା ବିଷୟରେ ଅନୁରାଗ । ୪- ସୁନିୟମ, ଶୃଙ୍ଖଳା ଓ ପରିପାଟୀ । ୫- ନୀତିଶିକ୍ଷା ନ୍ୟାୟାନୁସରଣ ସତ୍ୟକଥନ ପରୋପକାର, ଶାରୀରିକ ନିୟମ ପାଳନ, ୬- ବିଶ୍ରାମ ଓ କ୍ରୀଡା । ୭- ଶାସ୍ତି ଓ ପୁରସ୍କାର ବିଧାନ ୮- ଉତ୍କୃଷ୍ଟ ଓ ନିକୃଷ୍ଟ ଛାତ୍ର । ୯- ପଠନ ଓ ଲିଖନ ସମ୍ବନ୍ଧେ ସାଧାରଣ ମନ୍ତବ୍ୟ । ୧୦- ଅସଂଯୁକ୍ତ ବର୍ଣ୍ଣ ଶିକ୍ଷା-ଦେବା ପ୍ରଣାଳୀ, ୧୧- ବର୍ଣ୍ଣ ଉଚ୍ଚାରଣ ଓ ପଠନ ।

୧୨- ଶବ୍ଦ ପାଠ । ୧୩- ବର୍ଣ୍ଣ ଲେଖନ , ୧୪- ଶବ୍ଦ ଲେଖନ

ସଂଯୁକ୍ତ ବର୍ଣ୍ଣଶିକ୍ଷା ଦେବାର ପ୍ରଣାଳୀ ।

୧- ବନାନ । ୨- ଯ, ର , ଇତ୍ୟାଦି ଫଳା ।

୩- ଅନ୍ୟ ସଂଯୁକ୍ତ ବର୍ଣ୍ଣ ।

## ସାହିତ୍ୟ ।

୧- ସାହିତ୍ୟଶିକ୍ଷା ସମ୍ବନ୍ଧେ ସାଧାରଣ ମନ୍ତବ୍ୟ ।

୨- ପ୍ରବନ୍ଧ ଅଧ୍ୟୟନ । ୩- ପାଠ ଦେବାର ପ୍ରଣାଳୀ ।

୪- ପାଠଶିକ୍ଷା ପ୍ରଣାଳୀ । ୫- ପାଠ ନେବାର ପ୍ରଣାଳୀ ।

୬- ପଠନ , ଶବ୍ଦାର୍ଥ ଓ ବ୍ୟାଖ୍ୟା ସମ୍ବନ୍ଧେ ବିଶେଷ ମନ୍ତବ୍ୟ

୭- ବିଷୟ ଜ୍ଞାନ ଶିକ୍ଷାସମ୍ବନ୍ଧେ ବିଶେଷ ମନ୍ତବ୍ୟ

## ବ୍ୟାକରଣ ଶିକ୍ଷା ।

୧- ରଚନା । ୨- ଶୁଦ୍ଧଲେଖନ ଓ ଆଦର୍ଶଲିପି ।

## ଗଣିତ ।

୧- ପାଟୀଗଣିତ ଶିକ୍ଷାସମ୍ବନ୍ଧେ ସାଧାରଣ ମନ୍ତବ୍ୟ ।

୨- ଅନୁଶୀଳନୀ ଅଭ୍ୟାସ କରାଇବା ନିୟମ ।

୩- ପ୍ରାଥମିକ ଅଭ୍ୟାସ । ୪- ଶୀଘ୍ର ଅଙ୍କ କଷିବାର ଅଭ୍ୟାସ । ୫- ବୋର୍ଡରେ ଅଙ୍କ କଷିବା ।

୬- ଗୃହରେ ଅଙ୍କ କଷିବା , ୭- ଅଙ୍କ ଲେଖିବାର ବହି

୮- ଶୁଦ୍ଧତା । ଶୃଙ୍ଖଳା ଓ ପରିଚ୍ଛନ୍ନତା

ପାଟୀଗଣିତର ସାଧାରଣ ନିୟମ ଶିକ୍ଷାଦେବାର ପ୍ରଣାଳୀ

୧- ଶତପର୍ଯ୍ୟନ୍ତ ଗଣନା । ୨- ଶତପର୍ଯ୍ୟନ୍ତ ସଂଖ୍ୟାର ଯୋଗ , ବିୟୋଗ , ଗୁଣନ ଓ ଭାଗ । ୩- ଶତରୁ ଅଧିକ ସଂଖ୍ୟା । ୪- ସଂକ୍ଷିପ୍ତ ପ୍ରକ୍ରିୟା ।

୫- ମିଶ୍ର ପ୍ରକ୍ରିୟା ଭଗ୍ନାଂଶ ଇତ୍ୟାଦି ।

## କ୍ଷେତ୍ରତତ୍ତ୍ୱ

୧- କ୍ଷେତ୍ରତତ୍ତ୍ୱ ଶିକ୍ଷା ଦେବାର ମୁଖ୍ୟଉଦ୍ଦେଶ୍ୟ ସଙ୍ଗେ ସଂକ୍ଷିପ୍ତ ବିଷୟ ପରିଚୟ ପ୍ରଣାଳୀ । ୨- କ୍ଷେତ୍ର ମାନଙ୍କ ସମ୍ବନ୍ଧେ ସାଧାରଣ ଜ୍ଞାନ ଜନ୍ମାଇବାପାଇଁ ସାଧାରଣଉପଦେଶ ( ବାହୁ, କୋଣ ଭେଦରେ ପାର୍ଥକ୍ୟ କିକି ? ) ୩- ଏହାର ସାହାଯ୍ୟରେ ଘର ପ୍ରସ୍ତୁତ କରଣ, ପୋଖରୀ ନାଳ, କେନାଲ, ଖନନ, ପୃଥିବୀର ପରିମାଣ କଣ, ଜମି, ପର୍ବତ, ନଦୀ ଇତ୍ୟାଦିର ମାପ ସ୍ଥିତ ଶିକ୍ଷା ଦେବା ସଂକ୍ଷିପ୍ତ ନିୟମ । ୯- ଭୂଗୋଳ ବିବରଣୀ ଓ ଇତିହାସ । ୨- ଭୂଗୋଳ ବିବରଣ ଶିକ୍ଷା ସମ୍ବନ୍ଧେ ସାଧାରଣ ମନ୍ତବ୍ୟ । ୩- ଭୂଗୋଳ ବିବରଣ ଶିକ୍ଷା ଦେବାର ପ୍ରଣାଳୀ । ୪- ମାନଚିତ୍ର ସହିତ ସ୍ଥାନର ବିବରଣ ଶିକ୍ଷା । ୫- ମାନଚିତ୍ର ଅଙ୍କନ ଶିକ୍ଷା ।

୬- ସ୍ଥାନ ଭେଦରେ ଋତୁଭେଦର ଓ ସମୟ ପରିବର୍ତ୍ତନ ଶିକ୍ଷା ପ୍ରଣାଳୀ

## ଇତିହାସ-

୧- ଇତିହାସ ଅଧ୍ୟୟନ କରିବା ମୁଖ୍ୟ ଉଦ୍ଦେଶ୍ୟ ଶିକ୍ଷା ଦେବା ପ୍ରଣାଳୀ ।

୨- ଇତିହାସ ଶିକ୍ଷା ଦେବାର ସଂକ୍ଷିପ୍ତ ନିୟମ ପାଳନ,-

୩- ଇତିହାସ ଶିକ୍ଷାଦେଲେ ସ୍ମରଣ ଶକ୍ତିଗଠନ, ପ୍ରାଚୀନ ଓ ଅଧୁନିକ ରୁଚି ଓ ନୀତି ପରସ୍ପର ମିଳନକରି ନୂତନ ଧରଣ ଜୀବନ ଚଳାଇବା ପାଇଁ ସଂକ୍ଷିପ୍ତ ବିବରଣ-

୪- ଏଥିର ଶିକ୍ଷା ଦେଶ, କାଳ ଓ ପାତ୍ର ଭେଦରେ ମାନସିକ ଶକ୍ତି ଗଠନ କରିବା ପ୍ରଣାଳୀ ।

## ବିଜ୍ଞାନ ଓ ସ୍ୱାସ୍ଥ୍ୟରକ୍ଷା ।-

ବିଜ୍ଞାନ ଶିକ୍ଷାସମ୍ବନ୍ଧେ ସାଧାରଣ ମନ୍ତବ୍ୟ

ବିଜ୍ଞାନ ଓ ସ୍ୱାସ୍ଥ୍ୟରକ୍ଷା ଶିକ୍ଷା ଦେବାର ପ୍ରଣାଳୀ-

( କ ) ଶିଶୁମାନଙ୍କ ସ୍ୱାସ୍ଥ୍ୟର ଆବଶ୍ୟକତା ସମ୍ବନ୍ଧେ ସଂକ୍ଷିପ୍ତ ପରିଚୟ ଶିକ୍ଷା ପ୍ରଣାଳୀ-

( ଖ ) ସେମାନଙ୍କ ସ୍ୱାସ୍ଥ୍ୟୋନ୍ନତିର ପ୍ରଧାନ ଉପାୟ ସମ୍ବନ୍ଧେ ସାଧାରଣ ଶିକ୍ଷା-

( ଗ ) ସେମାନଙ୍କ ସ୍ୱାସ୍ଥ୍ୟୋନ୍ନତି ସଙ୍ଗେ ୨ ପାରିବାରିକ ଓ ସାମାଜିକ ଉନ୍ନତିର ଉପାୟ ଉଦ୍ଭାବନର ସଂକ୍ଷିପ୍ତ ପ୍ରଣାଳୀ-

( ଘ ) ସ୍ୱାସ୍ଥ୍ୟୋନ୍ନତି ହେଲେ ଦୀର୍ଘଜୀବନ ପ୍ରାପ୍ତ ହେବାର ସଂକ୍ଷିପ୍ତ ଉପଦେଶ-

( ଙ ) ବିଜ୍ଞାନ ଶିକ୍ଷାର ଅବଶ୍ୟକତା ସଙ୍ଗେ ୨ ନିଜର, ଗ୍ରାମର, ଦେଶର, ପ୍ରଦେଶର ମହାଦେଶର କିପରି ଉନ୍ନତି ହୁଏ ତହିଁର ସଂକ୍ଷିପ୍ତ ପରିଚୟ ପ୍ରଣାଳୀ-

( ଚ ) ବିଜ୍ଞାନର କାରଣ, ପ୍ରାଚୀନ ରୁଚି ସହିତ ମିଳନ କରି ଆଧୁନିକ ରୀତିରେ ଜୀବନ ଯାତ୍ରା ନିର୍ବାହ କରି ଚଳିବାପାଇଁ ସଂକ୍ଷିପ୍ତ ଉପଦେଶ ପ୍ରଦାନ-

( ଛ ) ପାଶ୍ଚାତ୍ୟଦେଶ ଅଧିବାସୀ ମାନେ ଆଧୁନିକ ବିଜ୍ଞାନ ଉପାର୍ଜ୍ଜନକରି ଆଲୋଚନା ପୂର୍ବକ କିମୋନ୍ନତି ଦେଖାଉ ଥିବାର ଉଦାହରଣ ଶିକ୍ଷା ପ୍ରଣାଳୀ ।

ସମ୍ପୂର୍ଣ୍ଣ

